# କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ



ଲେଖକ:

ଶ୍ରୀ ଘନଶ୍ୟାମ ମିଶ୍ର









# କବି ସମ୍ରାଟ ଉପେନ୍ଦ୍ରଭଞ୍ଜ

ପ୍ରକାଶିକା-
ଶ୍ରୀମତୀ କୁସୁମ କୁମାରୀ ମିଶ୍ର

ଲେଖକ -
ଜ୍ୟୋତିର୍ବିଦ ଘନଶ୍ୟାମ ମିଶ୍ର
ଏମ୍.ଏ.ବି.ଇଡି
ଜ୍ୟୋତିଷଶ୍ରୀ , ଜ୍ୟୋତିଷ ସୁଧାକାର

କବି ସମ୍ରାଟ ଉପେନ୍ଦ୍ରଭଞ୍ଜ

ଲେଖକ- ଜ୍ୟୋତିର୍ବିଦ ଘନଶ୍ୟାମ ମିଶ୍ର

ପ୍ରକାଶିକା- ଶ୍ରୀମତୀ କୁସୁମ କୁମାରୀ ମିଶ୍ର,
ପ୍ରେମଚାନ୍ଦ ନଗର,ବୁଗୁଡ଼ା

ମୁଦ୍ରଣ- ଅନ୍ନପୂର୍ଣ୍ଣା ପ୍ରିଣ୍ଟିଂ ପ୍ରେସ୍,
ବୁଗୁଡ଼ା, ଗଂଜାମ

ପ୍ରଥମ
ସଂସ୍କରଣ- ୨୮-୦୧-୨୦୨୩

ମୂଲ୍ୟ- ଟ. ୧୫୦/-

**'KABI SAMRAT UPENDRA BHANJA'**

Writer- Sri Ghanashyam Mishra
Publisher- Smt Kusum Kumari Mishra
Premchand Nagar, Buguda
Printed at- Annapurna Printing Press,
Buguda
1st Edition- 28-01-2023
Price- Rs. 150/-

# ଉତ୍ସର୍ଗ

ପିତା ସ୍ୱର୍ଗ ପିତା ଧର୍ମା ପିତାହି ପରମ ପଦ ତପଃ
ପିତରି ପ୍ରିତିମାପର୍ଣ୍ଣେ ପ୍ରିୟନ୍ତି ସର୍ବ ଦେବତା ॥

ମୋର ପିତା ସର୍ବଦେବମୟ, ମହାନ୍ ପଣ୍ଡିତ, ବିଖ୍ୟାତ ଚିକିତ୍ସକ, ବହୁ ଶାସ୍ତ୍ର ଓ ଭାଷା ନିପୂଣ, ସଙ୍ଗୀତ କଳାରେ ବିଶାରଦ ଶ୍ରୀଯୁକ୍ତ ଖଲି ମିଶ୍ର ଙ୍କ ପଦ କମଳରେ ମୋର ଏହି କ୍ଷୁଦ୍ର ସୃଷ୍ଟିଟିକୁ ଭକ୍ତି ନୈବଦ୍ୟ ସ୍ୱରୂପ ସମର୍ପଣ କରୁଅଛୁ ।

ବିନୀତ
ପୁତ୍ର
*ଘନଶ୍ୟାମ*

## ସୂଚୀପତ୍ର:-


| ବିବରଣୀ | ପୃଷ୍ଠା |
|---|---|
| ■ ଉପସ୍ଥାପନା | ୧ |
| ■ ଉପକ୍ରମ ଓ ବଂଶ ପରିଚୟ | ୨ |
| ■ ବର୍ଣ୍ଣନାରେ ପାଣ୍ଡିତ୍ୟ ଓ ଅଳଙ୍କାର ପ୍ରୟୋଗ | ୭ |
| ■ ପ୍ରାକୃତିକ ବର୍ଣ୍ଣନା | ୧୨ |
| ■ କବିଙ୍କ କେତେକ ବିଶିଷ୍ଟ ରଚନାବଳୀ | ୧୭ |
| ବୈଦେହୀଶ ବିଳାସ | ୧୮ |
| ଲାବଣ୍ୟବତୀ | ୩୫ |
| କୋଟିବ୍ରହ୍ମାଣ୍ଡ ସୁନ୍ଦରୀ | ୪୫ |
| କଳା କଉତୁକ | ୬୨ |
| ଶୁଭଦ୍ରା ପରିଣୟ | ୬୩ |
| ପ୍ରେମ ସୁଧାନିଧି | ୬୪ |
| ଅବନାରସ ତରଙ୍ଗ | ୬୫ |
| ରସିକ ହାରାବାଳୀ | ୬୬ |
| ଚିତ୍ର ଲେଖା | ୬୭ |
| ■ କବିଙ୍କ ଆଧ୍ୟାତ୍ମିକତା ଓ ଚରିତ୍ର | ୬୮ |
| ■ ଭଞ୍ଜ ଓ ସମାଜ | ୮୩ |
| ■ ଭଞ୍ଜୀୟ ପ୍ରଭାବ | ୮୭ |
| ■ ଉପସଂହାର | ୯୨ |

# ଉପସ୍ଥାପନା

ଓଡିଆ ଭାଷା ସାହିତ୍ୟର ଜାଜ୍ୱଲ୍ୟମାନ ତାରକା କାଳଜୟି କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଦୂର ଦୃଷ୍ଟି, ପାଣ୍ଡିତ୍ୟ, ଶବ୍ଦର ଯାଦୁକରୀ, ରମଣୀୟ, ଛନ୍ଦମୟ, ଜ୍ଞାନ ଗର୍ଭକ ରସାଣିତ ରଚନାକୁ କଳନା କରିବା ସହଜ ନୁହେଁ। ଏମ୍.ଏ. ପରୀକ୍ଷା ଦେଇ ସାରିବା ପରେ ଉପେନ୍ଦ୍ରଙ୍କ ଉପରେ ଗବେଷଣା କରିବାର ଇଛା ଥିଲେ ମଧ ପାରିବାରିକ ଜଞ୍ଜାଳ ଓ ସାମାଜିକ ଆର୍ଥିକ ସମସ୍ୟା ଯୋଗୁଁ ସମ୍ଭବ ହୋଇପାରି ନଥିଲା। ମୋର ମାନସପଟରେ କବି ସମ୍ରାଟ ରୀତି ଯୁଗୀୟ ରସିକ କବି ନଥିଲେ। ସେ ଥିଲେ ଓଡିଆ ସାହିତ୍ୟରେ ବୈପ୍ଳବିକ ଚିନ୍ତାଧାରା ଆଣିବାରେ ଭାଗୀରଥ। ଗୌଡିୟ ଧର୍ମ ଧାରାରେ ହେଉ ବା ରାଜ ଅନ୍ତପୁରର ବିଶୃଙ୍ଖଳିତ ଜୀବନଚର୍ଯ୍ୟା ଓ ବହୁ ସ୍ତ୍ରୀ ଉପଭୋଗର ଲାଳସା ଓ ତତ୍ ଜନିତ ବିବିଧ ସମସ୍ୟାର ନିଜେ ପର୍ଯ୍ୟବେକ୍ଷଣ କରି ସେଥିରୁ ଦୂରେଇ ଯାଇ ଏକ ପତ୍ନି ବ୍ରତର ଶୃଙ୍ଖଳା ଓ ଓଡିଆ ସାହିତ୍ୟର ପ୍ରତି ସେତେବେଳର ପଣ୍ଡିତ ବିଜ୍ଞ ବ୍ୟକ୍ତିଙ୍କ ଭୃକୁଞ୍ଚନ ଯୋଗୁଁ ଓଡିଆ ଭାଷାରେ ସଂସ୍କୃତ ସାହିତ୍ୟର ସମକକ୍ଷ କରି କାଳିଦାସ, ଭବଭୂତି, ଶ୍ରୀହର୍ଷ, ମାଘ ଭାରବୀଙ୍କ ପରି ସୃଷ୍ଟି କରିବାରେ ବହୁ ମାତ୍ରରେ ସଫଳ ସୃଷ୍ଟି ସମ୍ଭାର କରି ଯାଇଛନ୍ତି ଯାହା ଫଳରେ ଓଡିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପାଇବାରେ ବହୁତ ମାତ୍ରାରେ ସଫଳ ହୋଇପାରିଛନ୍ତି। ଉପେନ୍ଦ୍ରଙ୍କ ରଚନାରେ ପ୍ରାଣପାଚୁର୍ଯ୍ୟ, ମୂର୍ଚ୍ଛନାମୟ, ଛନ୍ଦୋବଦ୍ଧତା ଓ ସ୍ପନ୍ଦନମୟ ଆତ୍ମପ୍ରକାଶ କରିଥିବା ଭଞ୍ଜଙ୍କ ସୃଷ୍ଟିକୁ ସମ୍ୟକ ରୂପେ ସମୀକ୍ଷା କରିବା ଅସମ୍ଭବ। ମୁଁ ସାମାନ୍ୟ ରୂପେ ସଂକ୍ଷିପ୍ତ ଆଲୋଚନା କରିଛି। ଏହା ପୂର୍ବରୁ ଏକ ପତ୍ରିକାରେ ୧୫ ପୃଷ୍ଠାର ପ୍ରବନ୍ଧଟିଏ ଭଞ୍ଜଙ୍କ ଉପରେ ଲେଖିଥିଲେ। ଏହାକୁ ପାଠ କରି ସ୍ନାତକ ସ୍ତରର କେତେକ ବିଦ୍ୟାର୍ଥୀ ଉପକୃତ ହୋଇ ଏହାର ଆଉଟିକିଏ ବଡ ଆକାରରେ ଲେଖିବାକୁ ଅନୁରୋଧ କରିଥିଲେ। ଏହା ସେହି ଅଯାଚିତ ପରାମର୍ଶର ଫଳ। ବିଦ୍ୟାର୍ଥୀ ଓ ପାଠକଙ୍କୁ ଏହା କିଛି ତଥ୍ୟ ଦେଇ ପାରିଲେ ଶ୍ରମ ସାର୍ଥକ ହେବ।

# ଉପକ୍ରମ ଓ ବଂଶ ପରିଚୟ

ଉତ୍କଳ ସାରସ୍ୱତ ଭଣ୍ଡାରର ଅମୂଲ୍ୟ ମଣି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଘୁମୁସର ରାଜବଂଶରେ ଜନ୍ମ ଗ୍ରହଣ କରିଥିଲେ । ସେ ଥିଲେ ପ୍ରବଳ ପାଣ୍ଡିତ୍ୟ, ଜ୍ଞାନ ଓ ସୃଷ୍ଟିକାରୀ କ୍ଷମତାର ଅଧିକାରୀ । ତାଙ୍କର ଜୀବନ କାଳ ଗଜପତି ଦିବ୍ୟ ସିଂହ ଦେବଙ୍କ ସମସାୟିକ। ଆର୍ତ୍ତ ବଲ୍ଲଭ ମହାନ୍ତିଙ୍କ କଳନା ଅନୁଯାୟୀ ତାଙ୍କର ଜୀବନ କାଳ ୧୬୭୦ ରୁ ୧୭୨୦ ଅଟେ । ସେହି ସମୟରେ ଓଡିଶାର ଅଧିକାଂଶ ଭାଗ ବଙ୍ଗର ନବାବ ସୁଜାଉଦ୍ଦିନଙ୍କ ଅଧିନରେ ଥିଲା । ମୁର୍ଶିଦ କୁଲି ଖାଁ ମୋଗଲ ସମ୍ରାଟଙ୍କର ବଙ୍ଗ ବିହାର ଓ ଓଡିଶାର ସୁବାଦାର ଥିଲେ । ୧୭୦୭ ପର୍ଯ୍ୟନ୍ତ ଏହା ମୋଗଲ ସାମ୍ରାଜ୍ୟର ଅର୍ନ୍ତଭୁକ୍ତ ଥିଲା । ୧୭୦୭ ରେ ଆଉରଙ୍ଗଜେବଙ୍କ ମୃତ୍ୟୁପରେ ବିଶୃଙ୍ଖଳା ଦେଖା ଦେଲା । ବିଭିନ୍ନ ପ୍ରାନ୍ତରେ ନବାବମାନେ ସାଧିନ ଭାବେ କାର୍ଯ୍ୟ କଲେ । ନବାବ ସୁଜାଉଦ୍ଦିନ ସୁଶାସକ ଥିବାରୁ ପ୍ରଜାମାନେ ନିରାପଦରେ ଜୀବନ ଯାପନ କରୁଥିଲେ । ଶ୍ରୀ ମନ୍ଦିରର ରୀତି ନୀତି ଯଥାରୀତିରେ ଗଜପତି ମହାରାଜାଙ୍କ ଦ୍ୱାରା ନିର୍ବାହିତ ହେଉଥିଲା । ଏହି ସମୟ ମଧ୍ୟରେ ଉପେନ୍ଦ୍ରଙ୍କ ଜୀବନ କାଳ ଥିଲା । ବିଶିଷ୍ଟ କବି ସୁଶାସକ ଧନଞ୍ଜୟ ଭଂଜ କବିଙ୍କ ପିତାମହ ଥିଲେ । ତାଙ୍କ ଦ୍ୱାରା ସ୍ଥାପିତ ବହୁ ବ୍ରାହ୍ମଣ ଶାସନ ଦେଖିବାକୁ ମିଳେ ଯଥା - ବୀରଧନଞ୍ଜୟପୁର ଶାସନ, ପ୍ରତାପଧନଞ୍ଜୟପୁର ଶାସନ, ବିଜୟଧନଞ୍ଜୟପୁର ଶାସନ ଓ କୁଲାଡ ନିକଟସ୍ଥ ଧନଞ୍ଜୟପୁର ଶାସନ ଇତ୍ୟାଦି । ରାଜା ଧନଞ୍ଜୟ ଭଂଜଙ୍କ ପୁତ୍ର ନୀଳକଣ୍ଠ ଭଂଜଙ୍କ ଜ୍ୟେଷ୍ଠ ପୁତ୍ର ରୂପେ କୁଲାଡ ଗଡରେ ଅବତୀର୍ଣ୍ଣ ହୋଇଥିଲେ । କୁଲାଡ ଭଂଜନଗରଠାରୁ ୮ କି.ମି. ଦୂରରେ ଅବସ୍ଥିତ ।ଏହା ଏକ ଅତ୍ୟନ୍ତ ରମଣୀୟ ସ୍ଥାନ । ପୂର୍ବ ପଟେ କଳାଧାରା ପାହାଡଶ୍ରେଣୀ, ପଶ୍ଚିମରେ ବ୍ୟାଘ୍ର ଦେବୀ ପର୍ବତମାଳା ମଧ୍ୟରେ ଦଶପଲ୍ଲା ଓ କନ୍ଧମାଳରୁ ବାହାରିଥିବା ନଦୀ ଓ ନାଳର ସଂଯୋଗରେ କୁଲାଡଗଡର ପୂର୍ବ ଦିଗରେ ପ୍ରବାହିତ ବଡନଦୀ ଓ ବହୁ ପୁଷ୍ପ, ଲତା, ଆମ୍ର ପଣସର ବୃକ୍ଷରାଜିରେ ପରିପୂର୍ଣ୍ଣ ହୋଇ ଅପରୂପ ଶୋଭାଧାରଣ

କରିଛି । ଏହି ପ୍ରାକୃତିକ ବିଭବ ମଣ୍ଡିତ ପରିବେଶ ଜନ୍ମିତ ଉପେନ୍ଦ୍ରଙ୍କୁ କବିତ୍ୱରେ ବାନ୍ଧି ରଖିବାରେ ସମର୍ଥ ହୋଇଥିବ ।

ବର୍ତ୍ତମାନର ଘୁମୁସରକୁ ପୂର୍ବେ ଗୁମୁସର କହୁଥିଲେ ଓ ତତ୍ ପୂର୍ବେ ଏହା ଖୀଞ୍ଜାଳୀ ନାମରେ ନାମିତ ଥିଲା । ଏହା ବୌଦ ରାଜ୍ୟର ଏକ ଅଂଶ ଥିଲା । ପୂର୍ବେ ବୌଦରେ ଦୀନବନ୍ଧୁ ନନ୍ଦ ନାମକ ଜଣେ ବ୍ରାହ୍ମଣ ରାଜା ରାଜୁତି କରୁଥିଲେ ଓ ସେ ନିଃସନ୍ତାନ ଥିବାରୁ କେନ୍ଦୁଝର ରାଜାଙ୍କ ସାନ ଭାଇ ଦୈତାରୀ ଭଞ୍ଜଙ୍କ ଦୁଇ ପୁଅ ରଘୁନାଥ ଭଂଜ ଓ ବନମାଳୀ ଭଂଜଙ୍କୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କରିଥିଲେ । ପରେ ଦୀନବନ୍ଧୁ ନନ୍ଦଙ୍କ ଏକ ପୁତ୍ର ସନ୍ତାନ ହୋଇଥିଲା ଲୋକ କଥାରୁ ଶୁଣାଯାଏ । ସେହି ଶିଶୁ ପୁତ୍ର ହାତୀରେ ବସି ଯିବା ବେଳେ ଭଂଜ ଭାତୃଦ୍ୱୟଙ୍କ ଦ୍ୱାରା ମୃତ୍ୟୁ ବରଣ କରିଥିଲେ । କିନ୍ତୁ ରାଜାଙ୍କୁ ଖବର ଦିଆଗଲା ଦୈବାତ ହାତୀ ପିଠିରୁ ଖସି ପଡି ମୃତ୍ୟୁ ବରଣ କଲେ ବୋଲି । ଅଳ୍ପ ଦିନପରେ ରାଜାଙ୍କ ମୃତ୍ୟୁ ହେଲା । ରଘୁନାଥ ଭଂଜ ରାଜା ହେଲା ପରେ କନ୍ଧ ସର୍ଦ୍ଦାର ବାରଗାଡିଆକୁ ବିତାଡିତ କରି ଖିଞ୍ଜାଳୀ ଅଞ୍ଚଳ ଅଧିକାର କରିଥିଲେ । ଏବର ନେଟେଙ୍ଗା ନିକଟବର୍ତ୍ତୀ ଗୁମା (ଉଚ୍ଚଜାଗା)ସର (ଜଳସ୍ଥାନ) ଦେଖି ଗୁମସର ଗଡ ସ୍ଥାପନ କରିଥିଲେ । ଯାହାକି ପରେ ଘୁମୁସର ନାମ ଧାରଣ କରିଥିଲା । ଘୁମୁସରର ଅଠରେ ଗଡ ମଧ୍ୟରୁ କୁଲାଗଡ, ପୁରୁଣା ଗୁମୁସର ଗଡ, ଅନ୍ଧାରୀଗଡ ଓ ବିଷ୍ଣୁ ଚକ୍ର ଗଡ ଉନ୍ନତ ଥିଲା । ଏହି ଗଡ ମାନଙ୍କ ମଧ୍ୟରେ କୁଲାଡ ଗଡ ଦୃଢ ଓ ବିସ୍ତୃତ ଥିବା ଯୋଗୁଁ ତାହା କାଳ କ୍ରମେ ଘୁମୁସରର ମୁଖ୍ୟ ଗଡ ହୋଇଥିଲା । ଏହି କୁଲାଡ ଗଡରେ ଉପେନ୍ଦ୍ର ଭଞ୍ଜ ଜନ୍ମଗ୍ରହଣ କରିଥିଲେ ।

ରଘୁନାଥ ଭଞ୍ଜ ଘୁମୁସରର ଶାସକ ହୋଇ ଅନୁଜ ବନମାଳୀ ଭଞ୍ଜଙ୍କୁ ବୌଦ ରାଜ୍ୟର ଶାସନ ଭାର ଦେଇଥିଲେ । ଘୁମୁସର ଏକ ବିଶାଳ ରାଜ୍ୟରେ ପରିଣତ ହୋଇଥିଲା । ଏହାର ଉତ୍ତରରେ ଦଶପଲ୍ଲା, ଉତ୍ତର ପୂର୍ବରେ ନୟାଗଡ, ଉତ୍ତର ପଶ୍ଚିମରେ ବୌଦ, ପଶ୍ଚିମରେ ରଣବା ଓ କନ୍ଧମାଳ, ଦକ୍ଷିଣ ପୂର୍ବରେ ଆଠଗଡ, ଦକ୍ଷିଣରେ ଧରାକୋଟ ଓ ଦକ୍ଷିଣ ପଶ୍ଚିମରେ ସୋରଡା ଅବସ୍ଥିତ । ବର୍ତ୍ତମାନ ଏହି ଅଞ୍ଚଳ ଗଂଜାମ ଜିଲ୍ଲାର ଉତ୍ତର ଭାଗ ଓ କନ୍ଧମାଳର ଦକ୍ଷିଣ

ଅଞ୍ଚଳରେ ଅର୍ନ୍ତଭୂକ୍ତ । ଫୁଲବାଣୀର ଦରପର୍ଙ୍ଗିଆ, ରାଇକିଆ, କାଟିଙ୍ଗିଆ, ଟକାପାଦୁ, ପଶରା, ଘୁ. ଉଦୟଗିରି, ଲିଙ୍ଗାଗଡ ଇତ୍ୟାଦି ଘୁମୁସରରେ ଥିଲା । ସେତେବେଳେ ଘୁମୁସର ପୂର୍ବ-ପଶ୍ଚିମରେ ୯୦ କି.ମି. ଓ ଉତ୍ତର-ଦକ୍ଷିଣରେ ୭୨ କି.ମି. ଥିଲା । ରାଜ୍ୟକୁ ୨୪ ଟି ଅଂଚଳରେ ବିଭକ୍ତ କରାଯାଇ ପ୍ରତ୍ୟେକ ଅଂଶକୁ ଏକ ମୁଠା କୁହାଯାଉଥିଲା । ମୁଠାକାର ମାନେ ରାଜାଙ୍କୁ ମାନି ଚଳୁଥିଲେ । ବାର୍ଷିକ ରାଜସ୍ୱ ଓ ଭେଟି ଦେଉଥିଲେ ଏବଂ ନିଜ ଅଞ୍ଚଳର ସୈନ୍ୟଙ୍କ ଦାୟିତ୍ୱ ନେଉଥିଲେ । ସୈନ୍ୟମାନଙ୍କୁ ଜାଗିରି ଆକାରରେ ଜମି ଦିଆ ଯାଉଥିଲା । ଇଂରାଜୀ କ୍ୟାମ୍ପବେଲ୍‌ଙ୍କ ତଥ୍ୟ ଅନୁଯାୟୀ ଘୁମୁସରରେ ୧୦ ହଜାରରୁ ଅଧିକ ଶକ୍ତିଶାଳୀ ଲଢୁଆ ସୈନିକ ଥିଲେ । ଗୁମୁସରକୁ ଅକ୍ତିଆର କରିବା ପାଇଁ ଇଂରାଜୀ ମାନଙ୍କୁ ବହୁ କଷ୍ଟ କରିବାକୁ ପଡିଥିଲା । ମାନ୍ଦ୍ରାଜ ରାଜ୍ୟର ଉତ୍ତରରେ ଥିବା ୧୯ ଟି ଗଡଜାତ ମଧ୍ୟରୁ ଘୁମୁସର ସବୁଠାରୁ ଅଧିକ ଶକ୍ତିଶାଳୀ ଥିଲା ।

ଉପେନ୍ଦ୍ର ଭଂଜଙ୍କ ପିତାମହ ଧନଞ୍ଜୟ ଭଂଜ ଜଣେ ସୁସାହିତ୍ୟିକ, ପଣ୍ଡିତ ଓ କବି ଥିଲେ । ସେ ନିଜେ ରଘୁନାଥ ବିଳାସ ଗ୍ରନ୍ଥର ଲେଖକ । କବିଙ୍କ ପିତା ନୀଳକଣ୍ଠ ଭଂଜ ମଧ କବି ଓ ଜ୍ଞାନୀ ଥିଲେ । ସେତେବେଳେ ସାଧାରଣ ଶିକ୍ଷାର ବ୍ୟବସ୍ଥା ନଥିଲେ ମଧ ରାଜା ଓ ସଂଭ୍ରାନ୍ତ ପରିବାରର ପିଲାଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷାର ବ୍ୟବସ୍ଥା ଥିଲା । ଘୁମୁସର ଦରବାରରେ ସବୁବେଳେ ସାହିତ୍ୟ, ସଂଗୀତ, ବେଦ, ବେଦାନ୍ତ ଓ ପୁରାଣ ଚର୍ଚ୍ଚା ହେଉଥିଲା । ଓଡିଶାର ବିଭିନ୍ନ ଅଞ୍ଚଳରୁ ତଥା ଓଡିଶା ବାହାରୁ ମଧ ବିଶିଷ୍ଟ ବିଦ୍ୱାନ ମାନେ ଘୁମୁସରକୁ ଆସୁଥିଲେ । ଘୁମୁସର ରାଜ୍ୟରେ ବହୁ ବ୍ରାହ୍ମଣ ଶାସନ ଅବସ୍ଥିତ । ବ୍ରାହ୍ମଣ ମାନଙ୍କୁ ପୁରୀ ତଥା ଅନ୍ୟାନ୍ୟ ଅଞ୍ଚଳରୁ ଅଣାଯାଇ ରାଜାନୁଗ୍ରହରେ ବସବାସର ସୁବନ୍ଦୋବସ୍ତ କରାଯାଉଥିଲା । ଉପେନ୍ଦ୍ରଙ୍କ ପ୍ରତିଭାରେ ପିତାମହ ପ୍ରଭାବିତ ହୋଇ ତାଙ୍କ ପାଇଁ ବିଭିନ୍ନ ବିଷୟରେ ଶିକ୍ଷା ଦାନ ସକାଶେ ବିଦ୍ୱାନ ପଣ୍ଡିତ ମାନଙ୍କୁ ନିଯୁକ୍ତି କରିଥିଲେ । ଉପେନ୍ଦ୍ର ସଂସ୍କୃତ କାବ୍ୟ, କବିତା, ନାଟକ, ଜ୍ୟୋତିଷ, ଆୟୁର୍ବେଦ ପୁରାଣ, ବ୍ୟାକରଣ, ସଂସ୍କୃତର ଅଳଙ୍କାର ଶାସ୍ତ୍ର, ଶବ୍ଦକୋଷ ପ୍ରଭୃତି ବିଷୟରେ ଆଶାତୀତ ଜ୍ଞାନ ଅର୍ଜନ କରିପାରିଥିଲେ । ଓଡ଼ିଆ କବିମାନଙ୍କ ବ୍ୟତୀତ ସଂସ୍କୃତ ସାହିତ୍ୟର ବିଶିଷ୍ଟ କବି, ବାଲ୍ମିକୀ, ବ୍ୟାସ, କାଳିଦାଶ,

ଶ୍ରୀହର୍ଷ, ମାଘ, ବାଣଭଟ୍ଟ, ଭାରବୀ ଇତ୍ୟାଦି କବିଙ୍କ କାବ୍ୟ ସମୂହରେ ତାଙ୍କର ଉତ୍ତମ ପ୍ରବେଶ ଥିଲା ।

ଉପେନ୍ଦ୍ରଙ୍କ ବିଦ୍ୟା ପ୍ରତି ଅନୁରାଗ ଦେଖି ରଘୁନାଥ ନାମକ ସନ୍ୟାସୀ ତାଙ୍କୁ ରାମ ତାରକ ମନ୍ତ୍ର ଶିକ୍ଷାଦାନ ଦେଇଥିଲେ । ଉପେନ୍ଦ୍ର ଭଞ୍ଜ ମନ୍ତ୍ର ସାଧନା ପାଇଁ ନିର୍ଜନ ସ୍ଥାନମାନଙ୍କରେ ରାମ ତାରକ ମନ୍ତ୍ର ସାଧନା କରିଥିଲେ । ସେ ସ୍ଥାନ ମାନଙ୍କ ମଧ୍ୟରୁ ଦୁର୍ଗା ପ୍ରସାଦ ନିକଟସ୍ଥ ଘଞ୍ଚ ଅରଣ୍ୟ ବେଷ୍ଟିତ ଅନ୍ଧାରୀଗଡ ଗୁମ୍ଫା, ବୁଗୁଡା ବୁଦ୍ଧଖୋଲ ନିକଟସ୍ଥ ସିଦ୍ଧ ଗୁମ୍ଫା ଓ ଓଡଗାଁରେ ରଘୁନାଥଙ୍କ ଆରାଧନା କରି ସେଇ ନିକଟସ୍ଥ  ଜଙ୍ଗଲରେ ସାଧନା କରି ସିଦ୍ଧି ଲାଭ କରିଥିଲେ । କେବଳ ମନ୍ତ୍ର ପ୍ରଭାବରେ ନୁହେଁ ନିଜର ପାଣ୍ଡିତ୍ୟ, ଅଧ୍ୟବସାୟ ଓ ଜ୍ଞାନାନୁରାଗ ଗୁଣ ଯୋଗୁଁ ବିଖ୍ୟାତ କବିତ୍ୱର ଅଧିକାରୀ ହୋଇପାରିଥିଲେ । ଉପେନ୍ଦ୍ର ଭଂଜ ପ୍ରଥମେ ନୟାଗଡ ରାଜା ବିନାୟକ ସିଂହ ମାନ୍ଧାତାଙ୍କ କନ୍ୟାକୁ ବିବାହ କରିଥିଲେ । ନୟାଗଡ ରାଜା ତାଙ୍କୁ ଯୌତୁକ ସ୍ୱରୂପ ମାଳିସାହି ଗ୍ରାମ ଦାନ କରିଥିଲେ । ନୟାଗଡ ଜେମାଙ୍କର ଅକାଳ ବିୟୋଗ ଘଟିବାରୁ ବାଣପୁର ରାଜା ଅଚ୍ୟୁତ ହରିଚନ୍ଦନଙ୍କ ବିଦୁଷି କନ୍ୟାଙ୍କ ପାଣି ଗ୍ରହଣ କରିଥିଲେ । ସେ ଉତ୍ତମ ଗୃହିଣୀ ତଥା ପଣ୍ଡିତା ଥିଲେ । ଜ୍ଞାନୁନୁରାଗୀ ଥିବାରୁ ଉପେନ୍ଦ୍ରଙ୍କୁ କାବ୍ୟ ଲେଖା ଓ ଚର୍ଚ୍ଚାରେ ବହୁ ପ୍ରେରଣା ଦେଉଥିଲେ କିନ୍ତୁ ବିଧିର ବିଧାନ ଅଳ୍ପଦିନ ଘର ସଂସାର ପରେ ଆକସ୍ମିକ ଭାବେ ମୃତ୍ୟୁ ବରଣ କରିଥିଲେ । ଲୋକ କଥା ଅଛି ଉପେନ୍ଦ୍ର ହିଂସ୍ର ଶ୍ୱାପଦସଂକୁଳ ଅନ୍ଧାରୀ ଗଡକୁ ସାଧନା ପାଇଁ ଯାଉଥିଲେ । ଥରେ କିଛି ଦିନ ବିଳମ୍ବ ହେବାରୁ ଜଣେ ଲୋକକୁ ତଥ୍ୟ ଅନୁସନ୍ଧାନ ସକାଶେ ପଠାଗଲା । ସେ ଏକ ଗୁମ୍ଫା ନିକଟରେ ବ୍ୟାଘ୍ର ଦ୍ୱାରା ନିହତ ଏକ ଲୋକର ଶବକୁ ଦେଖି ଗଡରେ ଆସି ସେହିପରି ବାର୍ତ୍ତା କହନ୍ତେ ଉପେନ୍ଦ୍ରଙ୍କ ମୃତ୍ୟୁ ହୋଇଛି ଭାବି ଏହି ଦୁଃଖ ସମ୍ବାଦରେ ମ୍ରିୟମାଣ ହୋଇ ବାଣପୁର ଜେମାଙ୍କ ଶରୀରରୁ ପ୍ରାଣ ପକ୍ଷୀ ଉଡି ଯାଇଥିଲା । ଉପେନ୍ଦ୍ର ଭଂଜଙ୍କ ପିତାମହ ପ୍ରବଳ ପ୍ରତାପି ଓ ପରମ ରସିକ ମଧ୍ୟ ଥିଲେ ।  ସେ  ପୁରୀ ଗଜପତି ପୁରୁଷୋତ୍ତମ ଦେବଙ୍କ ଭଣଜା ଥିଲେ । ଧନଞ୍ଜୟଙ୍କ ପିତା ଗୋପୀନାଥ ଭଂଜ ପୁରୁଷୋତ୍ତମ ଦେବଙ୍କ ଭିଣୋଇ ଥିଲେ । ତେଣୁ ଗଜପତି ପରିବାର ସହ ଘୁମୁସର ଭଂଜ ବଂଶର ସଂପର୍କ ଦୃଢ ଥିଲା । ଧନଞ୍ଜୟ ଭଂଜ ନିଜ ସାନ ଭାଇ ଥାଟ ରାଜା ଗୋବିନ୍ଦ ଭଂଜଙ୍କୁ

ରାଜ କାର୍ଯ୍ୟ ପରିଚାଳନା ଭାର ଦେଇ ନିଜେ ସାହିତ୍ୟ ଚର୍ଚ୍ଚା ଓ ମଉଜ ମଜଲିସରେ ବ୍ୟସ୍ତ ଥିଲେ । ତାଙ୍କର ବହୁ ରାଣୀ ଥିଲେ । ରାଜ ଦରବାର ସବୁବେଳେ ସଂଗୀତ ଝଙ୍କାରରେ ନିନାଦିତ ହେଉଥିଲା । ନାଚୁଣୀ ନିୟୋଜିତ ହୋଇ ପ୍ରତ୍ୟହ ଦରବାରରେ ନୃତ୍ୟର ଆସର ଜମୁ ଥିଲା । ଲୋକ ମୁଖରୁ ଶୁଣାଯାଏ ଧନଞ୍ଜୟ ଭଂଜଙ୍କ ଅଙ୍ଗ ମରଦନ ତଥା କାର୍ଯ୍ୟ ପାଇଁ ସାତ କୋଡି ଗଣିକା ନିୟୋଜିତ ହୋଇଥିଲେ । ସେ ସମ୍ଭୋଗ ବିଳାସି ଥିଲେ । ସେ ବହୁଦିନ ଗାଦିରେ ରହିବାରୁ ତାଙ୍କର ପ୍ରିୟତମା ରାଣୀ ହାରୁ ଦେଇ (ମେଣ୍ଡା ଦେଇ)ଙ୍କ କଥାରେ ଉପେନ୍ଦ୍ରଙ୍କ ପିତା ନୀଳକଣ୍ଠ ଭଂଜଙ୍କୁ ଯୁବରାଜ କଲେ । କିନ୍ତୁ ଗଂଗାଧର ଭଞ୍ଜ ହେଉଛନ୍ତି ଜ୍ୟେଷ୍ଠ ପୁତ୍ର । ପରେ ଚମ୍ପାନାନୀ ନାମକ ଦାସୀଦ୍ୱାରା ସରୁ ଚକୁଳିରେ ବିଷ ଦେଇ ଧନଞ୍ଜୟ ଭଂଜଙ୍କୁ ନିହତ କରା ଯାଇଥିଲା । ଧନଞ୍ଜୟ ଭଂଜଙ୍କ ଜ୍ୟେଷ୍ଠ ପୁତ୍ର ଗଂଗାଧର ଭଂଜ ଓ ତାଙ୍କ ପୁଅ ଶତୃଞ୍ଜୟ ଭଞ୍ଜଙ୍କୁ ମଧ ହତ୍ୟା କରାଯାଇଥିଲା । ଫଳତଃ ନୀଳକଣ୍ଠ ଭଞ୍ଜ ରାଜା ହେଲେ ମଧ ଶୃଙ୍ଖଳାର ସହ ଶାସନ କରି ପାରିଲେ ନାହିଁ । ଚାରିଆଡେ ବିଦ୍ରୋହ ଦେଖା ଦେଲା । ପୂର୍ବରୁ ରାଜପୁତ୍ର ମାନଙ୍କ ହାତ ଦେଖି କୌଣସି ଜ୍ୟୋତିଷ କହିଥିବା କଥା ସତ ହେଲା । ସେ କହିଥିଲେ 'ଧନିଆଁ ପରେ ଘନିଆଁ ।' ଅର୍ଥାତ୍ ଧନଞ୍ଜୟ ଭଂଜଙ୍କ ପରେ ତାଙ୍କ ଭ୍ରାତୁ ପୁତ୍ର ଘନ ଭଞ୍ଜ ଶାସନ କରିବେ । ଘୁମୁସରରେ ବିଦ୍ରୋହ ହେଲା । ଘନ ଭଂଜ ତାର ନେତୃତ୍ୱ ନେଲେ । ଶତ୍ରୁ ଭଂଜଙ୍କ ପୁତ୍ର ରଣ ଭଂଜଙ୍କୁ ରାଜା କରିବା ସକାଶେ ଆଦିବାସୀ କନ୍ଧ ମାନଙ୍କୁ ମେଳି କରି ଗାଲେରୀ ପଟୁ ଆକ୍ରମଣ କଲେ । ନୀଳକଣ୍ଠ ନିଜ ପରିବାର ସହ ପ୍ରଥମେ ଧରାକୋଟ, ତାପରେ ଆଠଗଡ ଦେଇ, ମାଳିସାହିରେ ପହଞ୍ଚି ଉପେନ୍ଦ୍ର ଭଂଜଙ୍କ ସହ ଜୀବନର ଶେଷ ପର୍ଯ୍ୟନ୍ତ ରହିଥିଲେ । ରଣ ଭଂଜ ଅଳ୍ପଦିନ ଶାସନ କରି ଅଳ୍ପ ଦିନରେ ଅକାଳରେ ମୃତ୍ୟୁ ବରଣ କରିବାରୁ ଘନ ଭଂଜ ଘୁମୁସରର ରାଜା ହେଲେ । ସେ ଜ୍ଞାନୀ, ଗୁଣୀ, ସୁପଣ୍ଡିତ ଥିଲେ । ସେ ଉପେନ୍ଦ୍ର ଭଂଜଙ୍କୁ ଶାସନ ଦେବାକୁ ଚାହିଁଥିଲେ ଓ କୁଳାଡରେ ସ୍ଥାୟୀ ଭାବେ ନିବାସ କରିବାକୁ ଅନୁରୋଧ କରିଥିଲେ । କିନ୍ତୁ ଉପେନ୍ଦ୍ର ରାଜ ଗାଦି ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ହେଁ ବହୁବାର କୁଳାଡ ଆସି କକା ଘନ ଭଂଜଙ୍କ ସହ ଅବସ୍ଥାନ କରୁଥିଲେ ।

# ବର୍ଣ୍ଣନାରେ ପାଣ୍ଡିତ୍ୟ ଓ ଅଳଙ୍କାର ପ୍ରୟୋଗ

ଉପେନ୍ଦ୍ର ଭଞ୍ଜ ଯେଉଁ ସମୟରେ ଲେଖନୀ ଚାଳନା କରୁଥିଲେ ସାହିତ୍ୟ ସମାଲୋଚକଙ୍କ ମତରେ ତାହା ରୀତି ଯୁଗ । ରୀତି ହେଉଛି ଶୈଳୀ । ଏଠାରେ ବିଷୟବସ୍ତୁ ଓ ଭାବ ଅପେକ୍ଷା ଭାଷାରେ ଶବ୍ଦ ଚାତୁରୀର ପ୍ରୟୋଗକୁ ଅଧିକ ଗୁରୁତ୍ୱ ଦିଆଯାଇଥାଏ । ଏହି ଯୁଗ ସାହିତ୍ୟକୁ ସାଧାରଣତଃ ଦରବାରୀ ସାହିତ୍ୟ କୁହାଯାଏ । ସାଧାରଣ ଲୋକଙ୍କ ଅପେକ୍ଷା ଏହା ପଣ୍ଡିତ ଓ ଜ୍ଞାନୀ ମାନଙ୍କୁ ଆକୃଷ୍ଟ କରିଥାଏ । ଭଞ୍ଜଙ୍କ ପୂର୍ବରୁ ତାଙ୍କର ପିତାମହ ସୁସାହିତ୍ୟିକ ଓ ରସିକ ପ୍ରବର ଧନଞ୍ଜୟ ଭଞ୍ଜ ଏହାର ମୂଳଦୂଆ ପକାଇଥିଲେ । ସେହି ସମୟରେ ରାଜ ଦରବାର ମାନଙ୍କରେ ସାହିତ୍ୟ, ସଂଗୀତ ଓ ଧର୍ମ ସମ୍ବନ୍ଧୀୟ ଚର୍ଚ୍ଚା ହେଉଥିଲା । ପ୍ରାକୃତ ଭାଷାରେ ଲିଖିତ ସାରଳା ଦାଶଙ୍କ ମହାଭାରତ ଓ ବୈଷ୍ଣବ ପଞ୍ଚସଖା ଓ ଅନ୍ୟାନ୍ୟ କବିଙ୍କ ଲିଖିତ ଗ୍ରନ୍ଥମାନଙ୍କୁ ହେୟ ଦୃଷ୍ଟିରେ ଦେଖୁଥିଲେ । ସେଥିରେ ପାଣ୍ଡିତ୍ୟ ଓ ଭାଷା ଚାତୁରୀର ବୈଭବ ନଥିଲା କହି ତାହାର ଆଲୋଚନା ରାଜ ସଭାରେ ହେଉନଥିଲା । ସେହି ସମୟରେ ବିଶେଷ ରୂପେ ସଂସ୍କୃତ କବି କାଳୀ ଦାସ, ମାଘ, ଭାରବୀ, ଶ୍ରୀହର୍ଷ, ବାଣ ଭଟ୍ଟ ଇତ୍ୟାଦିଙ୍କ ବିଖ୍ୟାତ କାବ୍ୟର ତର୍ଜମା ହେଉଥିଲା । ଓଡିଆ ସାହିତ୍ୟ ଓ ଭାଷାର ଏ ହୀନ ମନ୍ୟତା ଦୂର କରି ଓଡିଆ ଭାଷା ଓ ସାହିତ୍ୟକୁ ସଂସ୍କୃତର ସମକକ୍ଷ କରାଇବାର ଯେଉଁ ମାନେ ପ୍ରୟାସ କରିଥିଲେ ସେମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ସର୍ବଶ୍ରେଷ୍ଠ । ସେ ଏକାକି ଓଡିଆ ଭାଷାକୁ ଅତି ପ୍ରାଚୀନ ଓ ଗୌରବର ଅଧିକାରୀ ଏବଂ ବହୁ ବିଜ୍ଞ କବି ଓ ମହାଜ୍ଞାନୀ ମାନଙ୍କ ଦ୍ୱାରା ସମୃଦ୍ଧ ସଂସ୍କୃତ ଭାଷା ଓ ସାହିତ୍ୟ ସହ ସମକକ୍ଷ କରିବାକୁ ପ୍ରୟାସ କରି ସେଥିରେ ସଫଳ ରୂପେ ଯଶସ୍ୱି ହୋଇ ଯଥାର୍ଥରେ ଓଡିଆ ସାହିତ୍ୟର କବି ସମ୍ରାଟ ହେବାର ସକଳ ଗୌରବର ଅଧିକାରୀ ହୋଇପାରିଛନ୍ତି । ଶବ୍ଦ ଓ ଅର୍ଥ ସମନ୍ୱୟରେ ସାହିତ୍ୟ ସୃଷ୍ଟି କରି ରମଣୀୟତାକୁ ପ୍ରକାଶ କରିବା ଥିଲା ରୀତି ଯୁଗର ଯଥାର୍ଥ ଲକ୍ଷ୍ୟ । ଏହା କାବ୍ୟର ବହିରଙ୍ଗ ପ୍ରକାଶରେ ସମର୍ଥ ଥିଲା । କାଳକ୍ରମେ ଏହା ଅନ୍ତଃ ସୌନ୍ଦର୍ଯ୍ୟର

ମଧ ପ୍ରକାଶ କରିପାରିଥିଲା । ଏହାର ଆଉ ଗୋଟିଏ ଦିଗ ହେଲା ଶ୍ରୁତୀ ମାଧୁର୍ଯ୍ୟ ସଂପର୍କିତ ପଦ ବିନ୍ୟାସରେ ଏହା କାବ୍ୟର ଆତ୍ମା ରୂପେ ପ୍ରକଟିତ ହେଲା । ରୀତି ଯୁଗୀୟ କାବ୍ୟରୁ ସଂଗୀତର ମୂର୍ଚ୍ଛନା ଆସିଥାଏ । ରୀତି ଯୁଗୀୟ କାବ୍ୟରେ ନବରସର ପ୍ରଭାବ ରହିଥିଲେ ମଧ ଶୃଙ୍ଗାର ରସକୁ ଶ୍ରେଷ୍ଠତ୍ୱ ପ୍ରଦାନ କରା ଯାଇଛି । ଦରବାରୀ ସାହିତ୍ୟ ହୋଇଥିବା ଯୋଗୁଁ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ରଚନାରେ ଏହାକୁ ପ୍ରମୁଖ ସ୍ଥାନ ଦିଆଯାଇଛି । ମାଘ, କାଳୀଦାସ, ଭବଭୁତି, ଶ୍ରୀହର୍ଷଙ୍କ ପଦାଙ୍କ ଅନୁସରଣ କରି ସେ ଶୃଙ୍ଗାର ରସକୁ ମୁଖ୍ୟ ରୂପେ ନିଜ କାବ୍ୟ ସୃଷ୍ଟିରେ ସ୍ଥାନ ଦେଇଛନ୍ତି । କବିଙ୍କ ଭାଷାରେ "ବିଚାରଇ କରିବି ଉତ୍ତମ ଛାନ୍ଦ ଗୀତ, ରସ ସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ ।" କବିଙ୍କ କାବ୍ୟ ସମୂହ ଅର୍ଥାଳଙ୍କାର, ଶବ୍ଦାଳଙ୍କାର ଓ ସୁନ୍ଦର ପଦ ସଂଯୋଗରେ ରସାଣିତ ହୋଇଛି । ଅବନା, ଅଦ୍ୟ, ମଧ, ପ୍ରାନ୍ତ, ମାଳ, ସର୍ବ ଯମକ, ଅନୁପ୍ରାସ, ଅଦ୍ଭୁତ, ବିରୋଧା ଭାଷ, ରୂପକ, ଅନୁଲୋମ, ପ୍ରତିଲୋମ, ମହାଯମକ ଇତ୍ୟାଦି ଅଳଙ୍କାର ପ୍ରୟୋଗରେ ତାଙ୍କରି ଲେଖନୀ କାବ୍ୟରେ ଚମତ୍କାରିତା ସୃଷ୍ଟି କରିବାକୁ ସକ୍ଷମ ହୋଇଛି । ଭଞ୍ଜଙ୍କର ଅଳଙ୍କାର ପ୍ରୟୋଗ କ୍ଷମତା, ଭାଷାର ମନୋଜ୍ଞ ଭଙ୍ଗୀ, ଶବ୍ଦଯୋଜନାର ଅପୂର୍ବ ଚମତ୍କାରିତା ଓ ଅବସ୍ଥାଗତ ପ୍ରସଙ୍ଗାବଳୀର ଚାଟୁକ ଚିତ୍ରଣ ଚାତୁରୀ ତାଙ୍କ ସୃଷ୍ଟି କରିଛି ଅନନ୍ୟ । ପଣ୍ଡିତ ମୃତ୍ୟୁଞ୍ଜୟ ଭଞ୍ଜ ଲେଖିଛନ୍ତି-

"ଉପମା ଭଞ୍ଜ ବୀରସ୍ୟ ତସ୍ୟୈବ ଚାର୍ଥ ଗୌରବମ୍ ।"

କବିଙ୍କ ରଚନା ସବୁଠାରେ କ୍ଲିଷ୍ଟ ହୋଇନାହିଁ । ତାଙ୍କ କାବ୍ୟରେ ମଧ ସୁନ୍ଦର ସରଳ ପାଦ ସଂଯୋଜନାର ଲାଳିତ୍ୟ ଦେଖାଯାଏ । ଲାବଣ୍ୟବତୀ କାବ୍ୟର ପ୍ରାରମ୍ଭରେ ଛାନ୍ଦରେ ଲେଖିଛନ୍ତି

"ମୃତିମନ୍ତ ପରି ମୃଦୁ ଗୀତ ବିଚାରଇ
ଏଣୁ କରି ଅଳଙ୍କାର ଥିବ ଯୁକ୍ତହୋଇ ।
ପଦ ସରଳ ଧ୍ୱନୀରେ ମାନସ ମୋହିବ
ଅର୍ଥୀ ଜନ ପ୍ରବରକୁ ଆନନ୍ଦ କରିବା ।।"

ଅଳଙ୍କାରର ସଫଳ ପ୍ରୟୋଗ ଓ ଯୋଜନା ବଦ୍ଧ ରୂପେ ସୁନ୍ଦର ସରସ ପଦ

ସଂଯୋଜନାର ଭୁରି ଭୁରି ଉଦାହରଣ ତାଙ୍କ ରଚନାରୁ ମିଳେ । କବି ଶରୀର ବିଭିନ୍ନ ଅଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ସିଦ୍ଧହସ୍ତ କିନ୍ତୁ କେଶ ପରି ଏକ ଗୌଣ ପଦାର୍ଥକୁ ମଧ୍ୟ ତାହାର ସୁନ୍ଦର ବର୍ଣ୍ଣନା କରି କରିଛନ୍ତି ତାହା ତାଙ୍କର ବୈଦେହୀଶ ବିଳାସରୁ ସୁସ୍ପଷ୍ଟ ହୁଏ ।

"ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ
ବିଭୂଷଣ କରି କନ୍ୟାକୁ ଆଣ,
ବୋଲି ଦେଲେ କଉଶିକ ଯେ
ବୋଳି ଦେଲା ପ୍ରାଯ୍ଯା ଗୋଳା ଚନ୍ଦନକୁ
ହୋଇଲେ ରଘୁବଂଶୀକ ଯେ ॥
ବେଶକାରୀ ଡାକି ପିଠେ ବସାଇ,
ବେଶ ଆରମ୍ଭିଲେ ବିମ୍ବ ଦେଖାଇ
ବିବନ୍ଧ କଲେ କୁନ୍ତଳ ଯେ
ବିଚିତ୍ର ମଣି ନୀଳମଣି ପ୍ରତିଭା- ଊର୍ଦ୍ଧ୍ବୁ ପ୍ରକାଶିତ ତଳ ଯେ ॥"

ମଣିର ଆଲୋକ ତଳୁ ଉପରକୁ ବିଚ୍ଛୁରିତ ହେବା ସ୍ଥାନେ ସୀତାଙ୍କ କେଶ ରାଶି ଖୋଲି ଦେବାରୁ ତାହା ବିଚିତ୍ର ନୀଳମଣିର ପ୍ରତିଭା ଉପରୁ ତଳକୁ ଆସିଗଲା । ମାଳ ଯମକରେ ଲେଖିଛନ୍ତି -

"ବିଚାରଇ କବି ମାଳ ଯମକରେ ମନ,
ବୁଲେ ରାମ ରାମ ରାମ ନେତ୍ରୀ ଘେନିବନ ।
ବୃହତ୍ଭାନୁ ଭାନୁ ଭାନୁ ତାପ ନାହିଁ
ବୃତ୍ତତମାଳ ମାଳ ମାଳତୀ ଲତା ଯହିଁ ॥
ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ ॥"

ମହାଯମକ ପ୍ରୟୋଗରେ

"ବୀଥି ବୀଥି ଶୋଭାଦିଶି କୁମୁଦ କୁମୁଦ,
ବିଲୋକ ହାସ ପ୍ରକାଶି କୁମୁଦ କୁମୁଦ ।

ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିହିନ ହୋଇଛି ମାତ୍ର କେଶରୀ କେଶରୀ ॥"

ସର୍ବ ଯମକରେ

"ବଇଦେହି ସୁମାନଏ ସୁରଭି ସୁରଭି,
ବଇଦେହି ସୁମାନଏ ସୁରଭି ସୁରଭି ।
ବିଦ୍ୟଲୋକରେ ପ୍ରିୟଙ୍କ ମାଧବୀ ସଂଘାତ
ବିଦ୍ୟ ଲୋକରେ ପ୍ରିୟଙ୍କ ମାଧବୀ ସଂଘାତ ॥"

ଅନୁପ୍ରାସ ପ୍ରୟୋଗରେ କାବ୍ୟ କିପରି ରସାଳ ହୁଏ, ତାର ଉଦାହରଣ ଲାବଣ୍ୟବତୀ କାବ୍ୟରୁ

"ଦେଖି ନବକଳିକା ବକାଳିକା ମାଳିକା
ଆଳିକାଳିକା କାନ୍ତ ସ୍ମରୀ,
ରକ୍ଷା କେମନ୍ତ କରି କରିବା ମତ୍ତ କରି
ଗତିକି ଏମନ୍ତ ବିଚାରୀ, ରେ ସହଚରୀ ॥"

ଲାବଣ୍ୟବତୀ କାବ୍ୟ ଅପୂର୍ବ ପଦ ସଂଯୋଜନା ସହ ଆଲଙ୍କାରିତା ଚରତ୍କାରିତାର ଏକ ଉଦାହରଣ ।

"ଅପୂର୍ବ ଅମ୍ବୁଜ ମୁଖକୁ ଚାହିଁ ଭୃଙ୍ଗ ଚକୋର,
ଚୁମ୍ବିବା ଲୋଭରେ ଧାଇଁଲେ ଶୃତି ଦେଖି କାତରା ।
କେଶ ଦରଶନେ ରଥାଙ୍ଗ ଧାଇଁ ଆହାର ବଶେ,
ବିଚ୍ଛେଦ ଭୟରୁ ପଳାଇ ଗଲେ ନରହି ପାଶେ ॥
ନୟନ ଉଜଳ କଜ୍ଜଳ ଲାଞ୍ଜି ଅନାଇ ଦେଇ,
ଗଭୀର ଜଳରେ ପଶିଲେ ମୀନ ଭୟକୁ ପାଇ ॥"

ଲାବଣ୍ୟବତୀ ସ୍ନାନ ରତ ସମୟରେ ମୁଖକୁ ପଦ୍ମ ଭାବି ଉଡି ଆସିଲା ଓ ମୁଖକୁ ଚନ୍ଦ୍ର ମନେ କରି ଚକୋର ଆସିଲା କିନ୍ତୁ ଶୃତି(ପୋଟଳୀ) ଦେଖି ଭ୍ରମର ଭୟ କଲା । ଶୃତି(ଫାଶ) ଦେଖି ଚକୋର ଭୟକଲା । କେଶକୁ ଅନ୍ଧକାର ଭାବି ଚକ୍ରବାକ ଆହାର ଆଶାରେ ଆସି ଭୟରେ ପଳାଇଲା ନୟନର ଲାଞ୍ଜକୁ ଦେଖି

ବଡଶୀର ସୁତା ଭାବି ମାଛ ମାନେ ଗଭୀର ଜଳକୁ ପଳାଇଲେ ।
ସେହିପରି ସ୍ନାନ ବର୍ଣ୍ଣନାରେ –

"କବି ବିଚାରିଲେ ବିଚିତ୍ର ହେଲା ତୁମ୍ବି ବୁଡିଲା
ନବୁଡି ଶଇଲ ସଲିଳ ଉପରେ ଭାସିଲା ।"

ନିମ୍ନ ଭାଗ ତୁମ୍ବି(ହାଲୁକା) ରୂପକ ନିତମ୍ବ ବୁଡିଗଲା ଉନ୍ନତ ପୟୋଧର ରୂପି ଶୈଳ ଯୁଗଳ ଜଳରେ ଭାସିଲା । ଲାବଣ୍ୟବତୀରେ ସେତେବେଳେ ବିଭିନ୍ନ ରାଜ୍ୟକୁ ନେଇ କିପରି ଆକର୍ଷଣୀୟ ପଦବିନ୍ୟାସ ହୋଇଛି ତାର ଉଦାହରଣ –

"କନା ଭଜେ କନ୍ୟା ଭଜ ଶୁଭିଲା ବାଣୀ,
ଅଙ୍ଗରେ ଅଙ୍ଗନା ଅଙ୍ଗ ପ୍ରଶଂସା କଲେ ।
ଏହାରମ୍ଭା ନୁହେ ବୋଲି କଳୀ କଳିଙ୍ଗ ହେଲେ,
ଉତ୍କଳେ ଉତ୍କଳ ହୋଇ ବିରହେ ଘାରୀ
ଗଭୀର ଏଗଉରବ ଗଉଡେ କରି ।।"

ଅର୍ଥର କ୍ଲିଷ୍ଟତାବୋଧ ସହ ଶବ୍ଦ ପ୍ରୟୋଗର କଠିନତା ଥିଲେ ହେଁ ଭଞ୍ଜ କୋମଳ ସରସଭାବ ଧାରାର ଯେଉଁ ବ୍ୟଞ୍ଜନା ସୃଷ୍ଟି କରିଯାଇଛନ୍ତି ତାହାର ତୁଳନା ନାହିଁ । ଭାଷାର ଲାଳିତ୍ୟ, ଶୃତିମାଧୁରୀର ସୃଷ୍ଟିକାରିତା, ଓଡିଆ ସୃଷ୍ଟି ଭାଷାକୁ ଏକ ବିପୁଳ ସାଙ୍ଗୀତିକ ସ୍ୱର, ସୌଷ୍ଟବରେ ମଣ୍ଡିତ କରିବାରେ ଯେଉଁ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି ଓ ରୀତି ଯୁଗର ଭଞ୍ଜ ପରବର୍ତ୍ତୀ କବି ମାନଙ୍କୁ ପ୍ରେରଣା ଦାୟକ ହୋଇଛନ୍ତି । ତେଣୁ ସେ ଓଡିଆ ଜାତିର କବିଗୁରୁ ଓ କବି ସମ୍ରାଟ ହେବାର ଯଥାର୍ଥତା ପ୍ରତିପାଦନ କରିଛନ୍ତି । ତାଙ୍କର ବର୍ଣ୍ଣିତ ଓ କଳ୍ପିତ ଚିତ୍ର ମଧ୍ୟରେ ଏକ ଅଭେଦ ସୁକ୍ଷ୍ମାତିସୁକ୍ଷ୍ମ ଅଂଶ ମାନଙ୍କ ମଧ୍ୟରେ ସାମ୍ୟ ସ୍ଥାପନ କରି ଯମକ ପ୍ରୟୋଗରେ ସିଦ୍ଧହସ୍ତ ହୋଇଛନ୍ତି । ଭଞ୍ଜଙ୍କର ଶବ୍ଦରେ ବିଚିତ୍ରତା ଆଣିବା ତାଙ୍କର ପାଣ୍ଡିତ୍ୟର ପରାକାଷ୍ଠାକୁ ସୁଚାଉଛି ଓ ଅନ୍ୟାନ୍ୟ କବିଙ୍କ ତୁଳନାରେ ଭଞ୍ଜଙ୍କ ଅଳଙ୍କାର ପ୍ରୟୋଗର ବିଶିଷ୍ଟତା ପ୍ରତିପାଦନ କରୁଅଛି । ବକ୍ରୋକ୍ତିରେ ପଦଲାଳିତ୍ୟ ସୃଷ୍ଟିକରି ମନୋରମ କାବ୍ୟ ସମ୍ଭାର ସୃଷ୍ଟି କରିପାରିଛନ୍ତି । ଭାବ, ଭାଷା, ଅଳଙ୍କାରର ଉଚିତ ସ୍ଥାନରେ ଉଚିତ ଅର୍ଥରେ ପ୍ରୟୋଗ କରି କାବ୍ୟର ଗାମ୍ଭିର୍ଯ୍ୟ ରକ୍ଷା କରି କବି ସିଦ୍ଧହସ୍ତ ହୋଇଛନ୍ତି ।

# ପ୍ରାକୃତିକ ବର୍ଣ୍ଣନା

ନାୟକ, ନାୟିକାଙ୍କ ଆବଶ୍ୟକତା ପୂରଣ ପାଇଁ କାବ୍ୟକୁ ସରସ ସୁନ୍ଦର କରିବା ସକାଶେ ଏବଂ ବିଷୟ ବସ୍ତୁ ପ୍ରାଞ୍ଜଳତା ଉଦ୍ଦେଶ୍ୟରେ ତଥା ପାଠକ ମନରେ ଆନନ୍ଦ ପ୍ରଦାନ ପାଇଁ କବିଙ୍କ କାବ୍ୟ ମାନଙ୍କରେ ଉଭୟ ବହିଃ ଓ ଅନ୍ତଃ ପ୍ରକୃତିର ବର୍ଣ୍ଣନା କରାଯାଇଛି । ବୈଦେହିଶ ବିଳାସରେ ସୂର୍ଯ୍ୟୋଦୟର ଚିତ୍ର -

" ବିଧ୍ୱଂସକ ତାମସ କ୍ରମଶେ ବିକର୍ତ୍ତନ ଉଦେ ହୋଇଆସେ
ବିଶ୍ୱ-ଚତୁରୀ ଉକୁଟାଇ କସ୍ତୁରୀ ଘେନି କୁଙ୍କୁମ ଚାତୁରୀ ବଶେ -ସେ ବିଗ୍ରହେ
ବୃଷା ବାହର ଚଢି କୁଞ୍ଜର, ବ୍ୟକତ କି ତା ଶିର ସୁନ୍ଦର
ବହେ ରଙ୍ଗାମ୍ବରେ ଛତ୍ର ଆଡମ୍ବରେ ଅମ୍ବରେକି ଦିଗ ପରିବାର
ବର୍ଦ୍ଧି ଜାତ ଇନ୍ଦୁ ନିଷ୍କଳଙ୍କା ବଦନରେ ଛାଡି କି ଶଙ୍କା
ବେଢିଲେ ଜଡିଲେ ଯୋଡିଲେ ଭାଲାର୍ଦ୍ଧ ବେଢି ଚକୋପନ୍ତି ଅଳକା -ସେ ବୈଦେହୀ
ବିଚଳିତ ନାଶା ଶ୍ୱାସବଳେ ବସି ଉର୍ଦ୍ଧେ କି ଶୁକ ଚଞ୍ଚଳ ।
ବିମ୍ବାଧାର ଶୁଷ୍କ ଧରଣୁ ଧରକ୍ଷେନାହିଁ ଏହି ଉପଲକ୍ଷେ ମିଳେ -ସେ ବୈଦେହୀ
ବକ୍ଷୋଜ ତଳେ ରୋମାଳୀ ସାଧୁ ବିଜନ ସ୍ଥାନ ହ୍ରଦ ବିଶୁଦ୍ଧ
ବାହୁଡେ ଶରଘା ଶରଧାରେ ଉରେ ସଞ୍ଚି ଅବା ରାମ ପ୍ରେମ ମଧୁ ସେ ବୈଦେହୀ ।।"

ଏଠାରେ ସ୍ୱାମୀ ବିରହର ପୀଡିତା ସୀତାଙ୍କ ଅଶୋକ ବାଟିକାରେ ମାନସିକ ସନ୍ତୁଳନ ସହ ସୂର୍ଯ୍ୟୋଦୟର ବର୍ଣ୍ଣନା କିପରି ପ୍ରଭାବିତ କରିଛି କବି ତାହା ଚିତ୍ରଣ କରିଛନ୍ତି । ଉଦିତ ସୂର୍ଯ୍ୟ ଯେପରି ଅନ୍ଧକାର ହରଣ କରି ଆଲୋକ ପ୍ରଦାନ କରୁଛନ୍ତି ବିଶ୍ୱଚତୁରୀ କାଳିମା ସଦୃଶ୍ୟ କସ୍ତୁରୀକି ଛଡାଇ କୁଙ୍କୁମ ଲେପନ ହୋଇଛି । ସେହିପରି ସୂର୍ଯ୍ୟ ସମ ସୂର୍ଯ୍ୟବଂଶୀ ରାମଚନ୍ଦ୍ର ଆଶାରୂପକ କୁଙ୍କୁମ ବୋଲି ଦେବାର ଉପଲବ୍ଧି କରୁଛନ୍ତି । ସୂର୍ଯ୍ୟୋଦୟରେ ତାଙ୍କ ମନ ରାମମୟ ହୋଇଛି । ଏଠାରେ ଭଞ୍ଜ କେବଳ ପ୍ରଭାତର ବର୍ଣ୍ଣନା କରି ନାହାଁନ୍ତି ତତ୍‌ସହ ସୀତାଙ୍କ ମାନସିକ ଅବସ୍ଥାକୁ ପ୍ରକାଶ କରିଛନ୍ତି । ଏଠାରେ ବାହ୍ୟ ପ୍ରକୃତି ଅନ୍ତଃ ପ୍ରକୃତି କିପରି ପ୍ରଭାବିତ କରିଛି ଓ ଉଭୟ ପ୍ରକୃତିର କିପରି ନିବିଡ ସମନ୍ୱୟ ରକ୍ଷା କରିଛନ୍ତି ତାର ଏକ

ସୁନ୍ଦର ଉଦାହରଣ । ଲାବଣ୍ୟବତୀ କାବ୍ୟରେ ସାଂଧକାଳୀନ ବର୍ଣ୍ଣନାରେ ରାତ୍ରକୁ ଏକ ଲଳନା ରୂପ ଦେଇ ଚମତ୍କାର ବର୍ଣ୍ଣନା କରିଛନ୍ତି ।

"ଏଥୁ ଅନ୍ତେ ଶୁଣ ରସ ଗ୍ରୀଷ୍ମମେ ନିଶି ପ୍ରବେଶ
ଉଦୟ ତାରା ଜୀବେଶ ହେଲେ ଆକାଶେ,
ଚକ୍ର ମୁଖ ଚକ୍ରନକ୍ର ଛେଦନେ ହୀରକ ଚକ୍ର
ପିଙ୍ଗିଛି ତାତ ସିଦ୍ଧିରେ କାମକି ରୋଷେ ।
ବେଶ ହେବ କି ରାତ୍ର ବାଳା ସ୍ଫଟିକ ପେଟିରେ କିବା କସ୍ତୁରାଦଳି ।
ଆଜକି ବିଭାବରୀକି ହୋଇବ ବିଭାବରୀକି
ମଲ୍ଲି ମାଳ ଦେଇ ବିଧୁ କିରଣ ମଣି,
ଏବିଚିତ୍ର ସ୍ୱୟମ୍ବର ନାରୀକି କରିଲାବର
ଏତେକାଳ ଦେଖାଗଲା ଏକଥା ପୁଣି ।
ରବି କରେ ମହି ମହିଳା ତାପି ହୋଇଥିଲାକି ଚନ୍ଦନ ଲେପିଲା ।"

ଚକ୍ରବାକସୁଖ ନାଶିବାକୁ କାମଦେବ ଚନ୍ଦ୍ର ରୂପକ ହୀରକ ଚକ୍ରପିଙ୍ଗି କି କିମ୍ବା ରାତ୍ରବାଳୀ ସ୍ଫଟିକ ପେଟିରେ କସ୍ତୁରୀ ଦଳୁଛି ପ୍ରଶାଧନ ପାଇଁ । ଚନ୍ଦ୍ରର କଳଙ୍କକୁ ଏଠାରେ କସ୍ତୁରୀ ରୂପେ କଳ୍ପନା କରାଯାଇଛି । ନାରୀକୁ ପୁରୁଷ ବରଣ କରିବା ଅସ୍ୱାଭାବିକ । କିନ୍ତୁ ଏଠାରେ ଚନ୍ଦ୍ର ମଲ୍ଲିମାଳ ରୂପକ ପୁଷ୍ପହାର ଦେଇ ରାତ୍ର ରୂପକ ବାଳିକୁ ବରଣ କଲା । ମହି ମହିଳା ରବିଙ୍କ କିରଣରେ ଉତ୍ତପ୍ତ ଥିଲା କିନ୍ତୁ ଚନ୍ଦ୍ର କିରଣ ଦ୍ୱାରା ତାହା ଉପସମ ହୋଇ ଚନ୍ଦନ ଲେପନ ସଦୃଶ୍ୟ ହେଲା ।

କବିଙ୍କ ସର୍ବଶ୍ରେଷ୍ଠ କାବ୍ୟ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ବସନ୍ତ ଋତୁ ବର୍ଣ୍ଣନାରେ ବହିଃ ପ୍ରକୃତି ସହ ନିବିଡତା ଦେଖାଇ ଅନ୍ତଃ ପ୍ରକୃତି କିପରି ରସମୟ ହୋଇ ଉଠିଛି ତାର ଉଦାହରଣ –

"ଅତିରସମୟ ବସନ୍ତ ସମୟ ବିଚିତ୍ର ପ୍ରମେୟ ତାହାର,
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଅଚରୀ ଚର୍ଚ୍ଚରୀବିହାର,
ଆଗତେ, ଆରୋହିଲା ନାଗେଶ୍ୱରକୁ,
ଋତୁରାଜ ପଦ୍ମ ସେରଜ ଘେନିଲା ଚାହିଁ ପ୍ରଫୁଲ୍ଲ କୋରକକୁ ।।

ରୁଚିପତ୍ର ସୂଚୀ ଆବରଣ ମଧ୍ୟେ ସାଧୁଗୁଣ ଘେନି ପଶିଲା,
ନବପୁଷ୍ପବତୀ ସେବତି ସଙ୍ଗତେ ଆସି କ୍ରୀଡାକୁ ପ୍ରକାଶିଲା,
ମନୋଜ, ଚିତ୍ତପୁର ମଧ୍ୟେ ଚତୁରେ
ଉଦିତ କରାଇ ରତି ଅନୁରାଗ ଅବିତ ଖେଳି ସେ ସତ୍ୱରେ ॥"

ଶ୍ଳେଷର ଗଭୀର ବ୍ୟଞ୍ଜନାରେ ଶବ୍ଦ ପ୍ରୟୋଗରେ ଧୁରନ୍ଧର ଭଞ୍ଜ ପରିବେଷଣ କରିଛନ୍ତି –

"ଶୋଭା କରବୀର ରସାଳ ପୁନ୍ନା ପୁଗମଗ୍ନ ଅଭିଳାଷ,
ସୁନାରୀ ମାଧବୀ ମଲ୍ଲିକା ସେବତି ଚମ୍ପାନାମ ସହ ଉଲ୍ଲାସ
ଏଭାବେ, ବଉଳ ସଙ୍ଗାତ ହୋଇଲେ,
ସହଚରୀ ଦାସି ଆସି ତହିଁ ମିଶି ଉନ୍ନତ ପ୍ରଭା ଦେଖାଇଲେ ॥"

ବସନ୍ତର ଆର୍ବିଭାବକୁ କବି ନିଜସ୍ୱ ଶୈଳୀରେ ମୌଳିକ କଳ୍ପନା ବିଳାସର ନିଃସର୍ଗ ଅଭିବକ୍ତିକୁ ଯେଉଁ ଅପୂର୍ବ ରୂପରେ ସଜାଇଛନ୍ତି ତାହା ଉପଭୋଗ୍ୟ । ଲାବଣ୍ୟବତୀ କାବ୍ୟରେ

"ଏହି ସମୟରେ ସୁନ୍ଦରୀ ଛାମୁରେ ପଭା ମଞ୍ଜୁଳା ଜଣାଇଲା,
ଅତି ମଧୁର ମଧୁଋତୁ ପ୍ରବେଶ କିଛି ଦିନ ଦେଲା ହୋଇଲା ।
ଶ୍ରବଣ, କରି ନାହୁଁ ନବ କାମିନୀ
ପିକ ବଚନ ପୁନଃ ପୁନଃ ପ୍ରକାଶ କଲାଣି ଅନ୍ଧାର ଯାମିନୀ ॥
ମଳୟ ଶିଖର ଶିରୀ ଚୋରୀ କରି ବହିଲାଣି ମନ୍ଦ ସମୀର,
କେଶରେ କେଶରେ ହେଲାଣି ମଞ୍ଜୁଳ
କେଶର ମଣ୍ଡନ କରିବା ଭଳିରେ ଫୁଟିଲେଣି କେତେ ବଞ୍ଜୁଳ ॥"

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଗ୍ରୀଷ୍ମ କାଳୀନ ବର୍ଣ୍ଣନାରେ କବିଙ୍କ ଲେଖନୀରୁ ଝରିଛି –

"ଶୁଣହେ ସାଧବ ମାଧବ ଶେଷେ ଝିଲିକା କହି
ଏ ଗ୍ରୀଷମ ଋତୁ ବିଷମ ସମ କୁହନ୍ତି କେହି ।

ସତ ଏ ପରଶ ମାତ୍ରରୁ ଜାତ ଗାତ୍ରରୁ ସ୍ୱେଦ
ଭାନୁ, ବୃଷଭାନୁ ଯା ଯୋଗୁଁ କଲେ ତେଜସ୍ୱୀ ବାଦ ।
ପ୍ରଭାକୁ ପ୍ରକାଶେ ଆକାଶେ ପ୍ରଭାକର ଦିବସେ,
ଜଳେ କୃଶାନୁ ସାନୁମାନ ମାନଙ୍କର ଅନିଶେ ।
ଧରଣୀ ସରଣୀ ଧୂଳିଙ୍କ କଲା ତପତ ତହିଁ,
ପଥିକ ପଦ ବିପଦକୁ ପଦ ପଦକେ ଦେଇ ।
ଶୀତଳ ସଲିଳେ ଅନିଳେ ସଦା ଯେ ରହି ଥରଲା,
ଜ୍ୱର ଜ୍ୱରାନ୍ତ ଅର୍ଚ୍ଚି ରୁଚି ତହୁଁ ପ୍ରତାପ କଲା ।
କି ନିର୍ଦ୍ଦୟ କାଳ ଉଦୟ ଏହି ଆଶ୍ଚର୍ଯ୍ୟ ବର୍ଣ୍ଣୁ,
ରସହୀନ କଲେ ର ସନା ଖାତ ବହୁତ ପଶୁ ।
ଶଙ୍କାରେ ପଙ୍କରେ ଅଙ୍ଗକୁ ଲୋଟାଇଲେ ମହିଷ,
ଘୂର୍ମିତ ଆତଙ୍ଗେ ପତଙ୍ଗେ ପିଇ ଖଜୁର ରସ ।"

ଲାବଣ୍ୟବତୀ କାବ୍ୟ ବର୍ଷା କାଳରେ ବର୍ଣ୍ଣନାରେ କବି –

"କରକା ଲୋଷ୍ଟ୍ର ପତନ ବହୁତ ଯୁବାକୁ ଲାଗିଲା ଅନଙ୍ଗଭୂତ
ଇନ୍ଦ୍ର କୋଦଣ୍ଡ ଦଣ୍ଡନଭେ ରାଜି ମାନିନୀ ମାନ ଦମ୍ଭ କୁମ୍ଭଭାଜି
ସେବିନା ପ୍ରହାରେ, ଏହା ଦେଖିଲା ନଥିଲା ସଂସାରେ
ନଦୀନାଗକଲେ ବେଗେ ଗସନ ଲହରୀର ସନା ଫୁଙ୍କାରସ୍ୱନ
ଫେନ କଞ୍ଚୁକ ଭ୍ରମେ ଚକ୍ରେଶୋହି ସାଗର ବଳେ ରହିବାକୁ ଯାଇ
ତା ଚାହଁ ଚପଳେ, ପଳାଇଗଲେ ମରୁକୁ ମରାଳେ
ପର ଅପର ଏଠାରେ ନାହିଁ ଦେଖବେନି କୂଳ ଗ୍ରାସକରଇ
ପଥିକ ନୀକର ଚାହିଁ ଶଙ୍କିଲେ ଉଡୁପ ଭୂଷଣନାମେ ଡାକିଲେ
ଆହୁରି, ଦର୍ଦ୍ଦୁର, ନିରତେ ଆରମ୍ଭିଲା ଆରତେ ସ୍ୱର ।
ଟେକି ଶିଖଣ୍ଡ କେକୀ ଷଣ୍ଢମତ ନାରୀ ମଣ୍ଡଳୀ ମଧ୍ୟେ କଲାନୃତ୍ୟ
ଦେଖି ସୁମନା ଗଣିକା ନିକର ଦରବିକାଶ ହାସ ମନୋହର
ଚାହିଁ ସେମତକୁ, ବାକ୍ୟ ନ ସ୍ଫୁରିଲା ପର ଭୃତକୁ ।"

ଶରତ ଋତୁ ବର୍ଣ୍ଣନାରେ କବି ଲାବଣ୍ୟ ବତୀରେ ଲେଖିଛନ୍ତି -

"ଦେଖି ନିରଦ ଦ୍ୱିରଦ ଶରଦ ଋତୁ କେଶରୀ ପ୍ରସରି ବିଶଦ
ଚାହିଁ ତାମ ସନାଶେ ବନଦେଶ ସ୍ଫୁଟେ ପ୍ରକାଶ କଲେ କାଶହାସ
ଛାର ଭେକ ଡାକ ଶୁଣିଣ କର୍ଣ୍ଣେ ଯାଇଥିଲେ ମାନସେ ଏହିମାନେ
ଯହୁଁ ସେମାନେ ଗଲେ ଗର୍ଜି ଗର୍ଜି ମହୀ ପ୍ରବେଶ ହେଲେ ହଂସରାଜ
କେହି ଖଦ୍ୟୋତ ସଙ୍ଗେ ଉଦେହେବା ଲାଜେ ତାରକା ଲୁଚିଥିଲେ କିବା
ତାଙ୍କ ସ୍ନେହର ଅବିଦିତ ଶଶି ଏବେ ନିର୍ମଳେ ଆକାଶେ ପ୍ରକାଶ ।"

ହେମନ୍ତ ଋତୁ ବର୍ଣ୍ଣନାରେ ସାମାଜିକ ଚିତ୍ରର ବର୍ଣ୍ଣନା କରି କବି ଲେଖିଛନ୍ତି -

"ଜଳ ଆଦରେ ଅନଳରେ ନିବେଶି ଅନିଳ ଅସ୍ନେହ,
ଜଳରେ କରାଇ ପୁଷ୍ପବତୀ କଲା ସେବତି ସନ୍ଦେହ ।
ପ୍ରଦିପ ଛଳେ ଜଳାଇଲେ ମନ୍ଦିରେ ହସନ୍ତି ମାନଙ୍କୁ,
ନିଶି ନିଦ୍ରା ବେଳେ ନତ କରାଇଲା ଉନ୍ନତ ଜନଙ୍କୁ ।"

ଜଳ ପରିବର୍ତ୍ତେ ଜନମାନେ ଅଗ୍ନିକୁ ଆଦର କଲେ, ସେବତି ପୁଷ୍ପ ପ୍ରସ୍ଫୁଟିତ ହେଲା, ଘରେ ଘରେ ନିଆଁ ଉହ୍ଲେଇ ଜଳିଲା । ଉନ୍ନତ ଜନ ଅର୍ଥାତ୍ ବୟସ୍କ ଲୋକମାନେ ଯାକି ଯୁକି ହେଇ ଶୋଇଲେ ।

ଏପରି ବହୁ ସରସ ସୁନ୍ଦର ମଧୁର ନିସର୍ଗ ମୌଳିକ ସୃଷ୍ଟି କରି ତାଙ୍କ ରଚନା ଚାତୁର୍ଯ୍ୟରେ ହୃଦୟ ମାଧୁର୍ଯ୍ୟ ଓ ପ୍ରାଣ ପାଚୁର୍ଯ୍ୟରେ ଭରିଯିବାର ସ୍ୱାତନ୍ତ୍ର୍ୟ ପରିଦୃଷ୍ଟ ହୁଏ ବିଜ୍ଞ ମାତ୍ରକେ ଉପଲବ୍ଧ କରିବେ । ରସଜ୍ଞ ନହେଲେ ଉପେନ୍ଦ୍ରଙ୍କ ରସ ବୋଧ କରିବା ଅସମ୍ଭବ । ପଦ ସଂଯୋଜନା ସହ ଅନ୍ତ ପ୍ରକୃତି ସହ ବହି ପ୍ରକୃତିରେ କିପରି ସମନ୍ୱୟ ସୃଷ୍ଟି କରିଛନ୍ତି ତାହା ତାଙ୍କର ବଳିଷ୍ଠ, ପାଣ୍ଡିତ୍ୟପୂର୍ଣ୍ଣ ବିଭିନ୍ନ ଅଳଙ୍କାରେ ମଣ୍ଡିତ ରଚନାବଳୀରୁ ସୁସ୍ପଷ୍ଟ ହେଉଅଛି ।



# କବିଙ୍କ କେତେକ ବିଶିଷ୍ଟ ରଚନାବଳୀ

ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟିରେ କଳନା ନାହିଁ । ପ୍ରକାଶିତ ଗ୍ରନ୍ଥଯେତେ ଅପ୍ରକାଶିତ ଗ୍ରନ୍ଥ ତାହା ଠାରୁ ଅଧିକ । ବିଭିନ୍ନ ଉପାୟରେ ସଂଗ୍ରହ କରି ଏ ମଧ୍ୟରେ ବହୁ ଗ୍ରନ୍ଥ ପ୍ରକାଶିତ ହାଇଥିଲେ ମଧ ଏ ପର୍ଯ୍ୟନ୍ତ ଆହୁରି କେତେକ ସୃଷ୍ଟି ଲୁକାୟିତ ଭାବେ ରହିଅଛି । ବିଭିନ୍ନ ସମୟରେ ବହୁ ଐତିହାସିକ, ସମୋଲୋଚକ ତାଙ୍କର ଗ୍ରନ୍ଥ ସଂଖ୍ୟାକୁ ଭିନ୍ନ ଭିନ୍ନ ରୂପେ କଳନା କରିଛନ୍ତି । ସେମାନଙ୍କ ମଧ୍ୟରେ ହଣ୍ଟର, ଷ୍ଟାଲିଙ୍ଗ୍, ମଧୁସୁଦନ ଦାସ, ତାରିଣୀ ଚରଣ ରଥ, ବିଜୟଚନ୍ଦ୍ର ମଜୁମଦାର, ପଣ୍ଡିତ ବିନାୟକ ମିଶ୍ର, ଅଧାପକ ଆର୍ତ୍ତବଲ୍ଲଭ ମହାନ୍ତି, ଜଗବନ୍ଧୁ ସିଂହ, ଡଃ ହରେକୃଷ୍ଣ ମହତାବ । କିଏ ୪୨ କିଏ ୪୩ । ଡଃ ମହାତାବଙ୍କ ହିସାବରେ ୬୮ ଟି ଗ୍ରନ୍ଥ ତା ସହିତ ଆଉ ୫ ଟି ଅପ୍ରକାଶିତ ଗ୍ରନ୍ଥ ଯୋଗ କରି କେତେକ ଭଞ୍ଜସାହିତ୍ୟ ଗବେଷକ ୭୩ ବୋଲି ହିସାବ କରିଛନ୍ତି ।

ପ୍ରକାଶିତ ଗ୍ରନ୍ଥ ମାନଙ୍କ ମଧ୍ୟରେ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ବୈଦେହୀଶ ବିଳାସ, ପ୍ରେମସୁଧା ନିଧି, ସୁଭଦ୍ରା ପରିଣୟ, ରସିକ ହାରାବଳୀ, ରସଲେଖା, ରସ ପଞ୍ଚକ, ଚିତ୍ରଲେଖା, ରାମଲୀଳାମୃତ, ଛାନ୍ଦ ଭୂଷଣ, ଚୌପଦିଚନ୍ଦ୍ର, ଚୌପଦି ଭୂଷଣ, କଳାକଉତୁକ, ସୁବର୍ଣ୍ଣରେଖା, ବଜାରବୋଲି, ଅବନାରସ ତରଙ୍ଗ, ଚିତ୍ରକାବ୍ୟ ବନ୍ଧୋଦୟ, ଯମକରାଜ ଚଉତିଶ. ଗୀତାଭିଧାନ, ଦଶପୋଇ, ନିଳାଦ୍ରିଶ ଚଉତିଶା ଇତ୍ୟାଦି । ଅପ୍ରକାଶିତ ସୃଷ୍ଟି ମଧ୍ୟରୁ ଶୋଭାବତୀ, ଇଛାବତୀ, ମୁଛାବତୀ, କଳାବତୀ, ଭବବତୀ, ବ୍ରଜଲିଳା, ତ୍ରୈଲୋକ୍ୟ ମୋହିନୀ, ହାସ୍ୟର୍ଣ୍ଣବ, ଚନ୍ଦ୍ରକଳା, ଦୁର୍ଗାସ୍ତୁତି, କୁଞ୍ଜବିହାର, କାମକଳା, ପ୍ରେମଲତା, ହେମମଞ୍ଜରୀ, ପୁରୁଷୋତ୍ତମ ମହାତ୍ମ୍ୟ, ପଞ୍ଚସାୟକ, ଛପୋଇ, ନପୋଇ, ବାରପୋଇ, ବିଚିତ୍ର ରଙ୍ଗିଣୀ, ଗୁରୁଜ ଗୀତା, କଳା କଣ୍ଟକ, ଶ୍ରୀକୃଷ୍ଣ ବିହାର, ଗଜ ନିସ୍ତାରଣ, ବାରମାସିଲତା, ମନୋରମା, ଗଡରତ୍ନ, ରାହସ ଲୀଳା, ଶଶିରେଖା, ଚନ୍ଦ୍ରରେଖା, ସଂଗୀତ କୌମଦି ଇତ୍ୟାଦି ।

ଏହି ଗ୍ରନ୍ଥ ସମୂହ ମଧ୍ୟରୁ ୩ଟି କାବ୍ୟ ଓଡ଼ିଆ ସାହିତ୍ୟ ଜଗତରେ ଆଲୋଡ଼ନ ସୃଷ୍ଟି କରିଛି । ଏହି ୩ଟି କାବ୍ୟ ସଂସ୍କୃତିର ଶ୍ରେଷ୍ଠ ସାଧକ ମାନଙ୍କ ସୃଷ୍ଟି ସହ ସମ ଆସନ ଦାବି କରେ । ଏହି ଗ୍ରନ୍ଥ ଯୋଗୁଁ ଓଡ଼ିଆ ଭାଷାକୁ କେହି ନ୍ୟୁନ ବୋଲି କହିପାରିବେନାହିଁ । ଏଥି ଯୋଗୁଁ ଓଡ଼ିଆ ଜାତି ଭଞ୍ଜଙ୍କ ନିକଟରେ ଋଣୀ । ସେ ଭଳି ଲେଖକଙ୍କ ପାଇଁ ଯାହା କରିବା କଥା ଆଜି ପର୍ଯ୍ୟନ୍ତ ତାହା ହୋଇ ପାରି ନାହିଁ । ସେଥି ଯୋଗୁଁ ଓଡ଼ିଆର ସ୍ୱାଭିମାନରେ ଆଘାତ ଲାଗିଛି । ସେହି ୩ଟି ବିଶିଷ୍ଟ ଗ୍ରନ୍ଥ ହେଉଛି ବୈଦେହୀଶ ବିଳାସ, ଲାବଣ୍ୟ ବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । କବିଙ୍କ ଅସଂଖ୍ୟ ସୃଷ୍ଟି ମଧ୍ୟରୁ ମାତ୍ର ଅଳ୍ପ କେତୋଟି ସୁମନର ସଂକ୍ଷେପରେ ସାମନ୍ୟ ସୂଚନା ଦେବି ।

## ବୈଦେହୀଶ ବିଳାସ

ଉପେନ୍ଦ୍ରଙ୍କ ପୂର୍ବରୁ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ରଚିତ ହୋଇଥିଲା ଓ ଅନ୍ୟକେତେକ କବି ମଧ ରାମକଥା ଉପରେ ରଚନା କରିଥରଲେ ମଧ ତାହା ସେତେବେଳେର ସଂସ୍କୃତ ବିଦ୍ୱାନ ଓ ପଣ୍ଡିତ ମଣ୍ଡଳି ଦ୍ୱାରା ପ୍ରଶଂସିତ ହୋଇପାରିନଥିଲା । ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କ ଦ୍ୱାରା ଲିଖିତ ରଘୁନାଥ ବିଳାସକୁ କବି ପାଠ କରିଥିଲେ । ଧନଞ୍ଜୟ ପୌତ୍ର ଉପେନ୍ଦ୍ରଙ୍କୁ ଅଶେଷ ଶ୍ରଦ୍ଧା କରୁଥିଲେ ହେଁ ଉପେନ୍ଦ୍ର ନିର୍ଭୟରେ ଜେଜେଙ୍କୁ ଉତ୍ତର ଦେଇଥିଲେ ରଘୁନାଥ ବିଳାସ ଭାବ ଦୃଷ୍ଟିରୁ ଠିକ୍ ଭାବେ ରଚିତ କିନ୍ତୁ ଏହାର ସୌନ୍ଦର୍ଯ୍ୟ ନାହିଁ । ଏହା ଉପଯୁକ୍ତ ଅଳଙ୍କାରଯୁକ୍ତ ହୋଇପାରିନାହିଁ । ଯଦି ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ଯୁକ୍ତ ହୋଇଥାନ୍ତା ତାହାହେଲେ ପୌରାଣିକ ବିଷୟ ହେଲେ ମଧ ସର୍ବଜନ ଆଦୃତ ହୋଇ ବିଦ୍ୱାନ ମଣ୍ଡଳୀର ଦୃଷ୍ଟିରେ ଏକ ଆଦରଣୀୟ କାବ୍ୟର ମର୍ଯ୍ୟାଦା ଲାଭ କରିପାରିଥାନ୍ତା । ପିତାମହ ଉପେନ୍ଦ୍ରଙ୍କୁ ଏପରି ଏକ ଗ୍ରନ୍ଥ ଲେଖିପାରିବକି ପଚାରିବାରେ ଉପେନ୍ଦ୍ର ପିତାମହଙ୍କୁ କହିଥିଲେ ଆପଣଙ୍କ ଆର୍ଶୀବାଦ ଥିଲେ ମୁଁ ଏପରି ଏକ ଗ୍ରନ୍ଥ ଆପଣଙ୍କୁ ଉପହାର ଦେବି । ଉପେନ୍ଦ୍ର ନିଜେ ରାମତାରକ ମନ୍ତ୍ର ସାଧକ ଥିଲେ । ତାଙ୍କ କାବ୍ୟ ମାନଙ୍କରେ ସେ ରାମଚନ୍ଦ୍ରଙ୍କ ପ୍ରାର୍ଥନା, ପ୍ରଶଂସାରେ ଶତମୁଖ ଥିଲେ । 'ବ' ଆଦ୍ୟାନୁପ୍ରାସରେ ୫୨ ଟି ଛାନ୍ଦରେ ବୈଦେହୀଶ ବିଳାସ

ରଚିତ । ଏଥିରେ ସୀତାଙ୍କ ନିର୍ବାସନ, ଲବ କୁଶ ଜନ୍ମ, ରାମଚନ୍ଦ୍ରଙ୍କ ପ୍ରୟାଣକୁ ବିଭଙ୍ଗ ରସ ପାଇଁ ବର୍ଣ୍ଣନା କରାଯାଇନାହିଁ । ବୈଦେହୀଶ ବିଳାସ କବିଙ୍କର ଅନ୍ୟତମ ଶ୍ରେଷ୍ଠ ରଚନା ଓ କେତେକ ସାହିତ୍ୟ ସମାଲୋଚକ ଏହା ତାଙ୍କର ଶ୍ରେଷ୍ଠ ସୃଷ୍ଟି ବୋଲି କହିଥାନ୍ତି । ଏଥିରେ କବି ଅଳଙ୍କାର ଓ ପଦ ସଂଯୋଜନା, ନିଜର ଭକ୍ତି, ମହାକାବ୍ୟର ସମସ୍ତ ଲକ୍ଷଣ ଯୁକ୍ତ କରି ଏକ ସରସ ସୁନ୍ଦର ସୁଯୋଜନାବଦ୍ଧ କାବ୍ୟ ଭାବେ ସୃଷ୍ଟି କରିଛନ୍ତି । ବୈଦେହୀଶ ବିଳାସର ନାମକରଣ ଯଥାର୍ଥ ହୋଇଛି । ବ ଅଦ୍ୟ ଅନୁପ୍ରାସରେ ସମଗ୍ର କାବ୍ୟ ରଚିତ ହୋଇଥିବା ଯୋଗୁଁ କାବ୍ୟର ପ୍ରଥମରେ ମଧ ବ ବ୍ୟବହୃତ ହେବ ତେଣୁ ବୈଦେହୀଙ୍କ ଇଶ ବା ପ୍ରାଣ ବଲ୍ଲଭ ବା ରାମଚନ୍ଦ୍ରଙ୍କ ବିଳାସ ସମ୍ପର୍କରେ ବର୍ଣ୍ଣନା କରିଥିବା ଯୋଗୁଁ ଗ୍ରନ୍ଥର ନାମ କରଣ ଏପରି ହୋଇଛି । ବହୁ ଟୀକାକାର ଏହି ନାମକରଣର ଅନେକ ଦୃଷ୍ଟାନ୍ତ ଦିଅନ୍ତି । ଏହା ପରଂବ୍ରହ୍ମ ନାରାୟଣଙ୍କ ଅବତାରୀ ଲୀଳା ଅଟେ । ଭଗବାନଙ୍କୁ ସ୍ମରଣ କରି କବି କାବ୍ୟର ଆରମ୍ଭ କରିଛନ୍ତି –

"ବନ୍ଦଇ ଦୀନ ବାନ୍ଧବ ହରି
ଯେତମ ଚକ୍ରନାଶ ଖଣ୍ଡନ କାରୀ
ସଦା କମଳାନନ୍ଦ ବିହାରୀ, ସଭାବେ ଇନଯେ ।"

ପୂର୍ବ ସଂସ୍କୃତ ତଥା ଓଡିଆ ଭାଷାର ଲେଖକଙ୍କୁ ସେ ହେୟ କରିନାହାନ୍ତି ବରଂ ସେମାନଙ୍କ ଦିପ୍ତିକୁ ସମକକ୍ଷ ନୁହନ୍ତି ବୋଲି କହି ନିଜକୁ ଜ୍ୟୋତିରିଙ୍ଗଣ (ଜୁଳୁଜୁଳିଆ ପୋକ) ରୂପେ ବର୍ଣ୍ଣନା କରିଛନ୍ତି । ରବିନ୍ଦ୍ରନାଥ ଟାଗୋର ତାଙ୍କର କବିତାରେ ଜୁଳୁଜୁଳିଆ ପୋକର ସ୍ୱକୀୟ ମୌଳିକ ଆଲୋକ ସୃଷ୍ଟିର କ୍ଷମତା ଅଛି ବୋଲି ବର୍ଣ୍ଣନା କରିଛନ୍ତି । ଏହି ସ୍ୱତନ୍ତ୍ର ନିଜସ୍ୱ ଆଲୋକ ଏହି ଅତି କ୍ଷୁଦ୍ର ଜୀବର ମହତ୍ତ୍ୱକୁ ପ୍ରତିପାଦନ କରିଛନ୍ତି । ସେପରି ଉପେନ୍ଦ୍ର ନିଜର ମୌଳିକତାରେ ସେ ନିସର୍ଗ ସୁନ୍ଦର ସୃଷ୍ଟି କରିଥିବାର ପରିଚୟ ଦେଇଛନ୍ତି ।

"ବିବେକ ଉଦୟ ଏମନ୍ତ ଧାୟିଯେ
ବ୍ୟୋମେ ତାରକା ଯେ ଝଲସୁ ଥାଇ
ବିଭାବରୀରେ ଜ୍ୟୋତି ରିଙ୍ଗଣ ଗଣ ଜ୍ୟୋତିକି ଦେଖାନ୍ତି ପୁଣ
ସୁଜନେ, ସାବଧାନରେ ଶୁଣ ଛାନ୍ଦ ରଚଇ ଯେ ॥

କବି ବିଶ୍ରବା ଋଷିଙ୍କ ଠାରୁ ରାବଣ ଓ ତାର ଭାଇଭଗ୍ନିଙ୍କ ସୃଷ୍ଟି ଓ ତାର ଦୌରାତ୍ମ୍ୟ ବର୍ଣ୍ଣନା କରି ତାର ପ୍ରତିକାର ପାଇଁ ଦେବଗଣ ଚେଷ୍ଟିତ ହୋଇଛନ୍ତି ।

"ବାମଦେବ ଦେବରାଜ ଗୁରୁ ସଙ୍ଗତରେ,
ବିମାନେ ସୁମନେ ଗଲେ କ୍ଷୀର ସିନ୍ଧୁନୀରେ ।
ବ୍ରହ୍ମାଣ୍ଡ କ୍ଷୋଭିତେ ଭୀତ ବ୍ରହ୍ମା ପ୍ରମୁଖରେ,
ବିଷ୍ଣୁର ଭରସାରେ ସ୍ତୁତି କଲେ ଖରେ ।"

ଦେବଗଣ ଆକୁଳରେ ବିଷ୍ଣୁଙ୍କଠାରୁ ଉତ୍ତର ମିଳିଲା

"ବିଶ୍ୱ କେଶନ ସେନହ କରି ଏ ଉତ୍ତରେ,
ବିଧୁକାଶ ଜିତ ହାସ ପ୍ରକାଶି ସତରେ,
ବହିବି ନାହିଁ ମୁଁ ଅରି ଅରିମାରେ ଖରେ ।
ବନୌକା ପ୍ରବଳ ବଳ ସଙ୍ଗ ହେବ ହେଲେ ,
ବୋଲିଣ ଅନ୍ତର ଯେ ଅନ୍ତର୍ଯ୍ୟାମୀ ହେଲେ ।"

ପୂର୍ବେ ଋଷିଗଣ ତ୍ରିକାଳ ଦର୍ଶୀ ଥିଲେ । ସେମାନେ ସାମାଜିକ, ନୈତିକ, ଆଧ୍ୟାତ୍ମିକ, ରାଜନୈତିକ ଇତ୍ୟାଦି ସବୁ ବିଷୟରେ ସୁପରାମର୍ଶ ଦାତା ଥିଲେ । ଋଷି ସନତ କୁମାର ଅଯୋଧ୍ୟାର ପ୍ରଧାନ ମନ୍ତ୍ରୀ ସୁମନ୍ତଙ୍କୁ ପରଂବ୍ରହ୍ମଙ୍କର ଅବତାର ବିଷୟରେ ସୂଚନା ଦେଲେ । ଭଗବାନ ଅଯୋଧ୍ୟାରେ ଦଶରଥ ନନ୍ଦନ ରୂପେ ଜନ୍ମ ଗ୍ରହଣ କରିବେ ବୋଲି ଗୋପନରେ ସୂଚନା ଦେଲେ । କବିଙ୍କ ଭାଷାରେ-

"ବିଭ୍ରାଜିତ ଭବନରେ ଜନରେ ହୋଇବେ
ବାତ୍ସଲ୍ୟ ରସ ବତ୍ସଳ ହୋଇଣ ଦଇବେ ।
ବିକଶିତ ଶୀତକର ଧବଳ ପକ୍ଷରେ
ବିହୟସେ ଯଥା ବିହାର ସେ ଏ ଲକ୍ଷ୍ୟରେ ।
ବନ୍ଧୁବର୍ଗ ଜୀବଞ୍ଜବ ନୟନ ତୋଷିବେ
ବ୍ୟକ୍ତେ ଭକ୍ତ ସରବ କୈରବ ଉଲ୍ଲସିବେ ॥"

ମନ୍ତ୍ରୀ ଦଶରଥଙ୍କୁ ସୂଚନା ଦେଇ ପରମ ଆନନ୍ଦ ଲାଭ କଲେ । ବାଲ୍ମିକୀ

ଭବିଷ୍ୟ ପୁରାଣରେ ଏ ସବୁ ଉଲ୍ଲେଖ କରୁଥିବାରୁ ବାସ୍ତବରେ ଦେଖିବା ସକାଶେ ଆନନ୍ଦ ମନରେ ପରଂବ୍ରହ୍ମଙ୍କୁ ସ୍ମରଣ କଲେ । ସୀତା ମିଥିଲା ରାଜା ଜନକ ଦ୍ୱାରା ପ୍ରାପ୍ତ ହୁଅନ୍ତେ କବି ଅଳଙ୍କାର ପ୍ରୟୋଗରେ ରସାଣିତ ଭାଷାରେ ସୀତାଙ୍କ ନାମ କରଣ କରିଛନ୍ତି । ଯଥା -

ବୈଦେହୀ ନାମ ପାଇଁ -

"ବିଦେହ ଜାୟା ଏକ କୋଟି ହେଲେ ସମୟ ଆଉ,
ବିଦେହ ଦେଶରେ ଉଦ୍ଧବି ବୈଦେହୀ ବୋଲାଉ ।"

ଜାନକୀ ନାମ ସକାଶେ-

"ବିଦୂଷ ଜନକ ପାଳନେ ବୋଲାଇବ ଜାନକୀ
ବିଦୂଷଣ ଶୋଭା ଜେମାର ଆଉ ସମ ଆନକି ।"

ଲୋପପାଦ ଦେଶରେ ବୃଷ୍ଟି ପାଇଁ ଋଷ୍ୟଶୃଙ୍ଗ ଋଷିଙ୍କୁ ଆଣିବାକୁ ଜରତା ବେଶ୍ୟା ତାର ସଂଗୀମାନଙ୍କୁ ଧରି ଯାଇଅଛି । ଋଷ୍ୟଶୃଙ୍ଗ ଅତି ସରଳ ଓ ନାରୀ କଣ ଜାଣିନଥାନ୍ତି । ତାଙ୍କୁ ଜରତା ଭୁଲାଇ ଆଣିଛି । ସେମାନଙ୍କ କଥୋପକଥନକୁ କବି ସରସ ରୂପ ଦେଇଛନ୍ତି ।

"ବନେ ତୁମ୍ଭେ ଭ୍ରମ ଆମେ ବନରେ ବିଳାସୁଁ
ବନୈକା ତୁମ୍ଭେ ବନିତା ଆମ୍ଭେଟି ଏ ବଶୁଁ ।
ବୋଲିବାରେ ରାମ ମନ୍ଦ ଅଦ୍ୟବର୍ଣ୍ଣ ଭିନ୍ନ
ବିସର୍ଗ ଚତୁର୍ଥ ବର୍ଣ୍ଣ ଏକ କରି ଘେନ ।
ବସନ୍ତି ଆମ୍ଭ ଦେବତା ଶମ୍ଭୁ ହୃଦସ୍ଥଳେ
ବକ୍ଷେ ରୁହ ଉରେ ଯୋଡି ଶୀଘ୍ର କଲା କୋଳ ।"

ଋଷ୍ୟଶୃଙ୍ଗ ଦ୍ୱାରା ଲୋମପାଦଙ୍କ ରାଜ୍ୟରେ ବୃଷ୍ଟି ହୋଇଛି । ଦଶରଥଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଋଷ୍ୟଶୃଙ୍ଗ ଅଯୋଧାରେ ପୁତ୍ରେଷ୍ଟି ଯଜ୍ଞ କରିଛନ୍ତି । ସେଥିରୁ ଉତ୍ପନ୍ନ ଚରୁ ଭକ୍ଷଣ କରି ୩ଟି ରାଣୀଙ୍କ ଗର୍ଭରୁ ରାମଚନ୍ଦ୍ର, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କର ଆର୍ବିଭାବ ହୋଇଛନ୍ତି । ବିଦ୍ୟା ଶିକ୍ଷାପରେ ବିଶ୍ୱାମିତ୍ର ଋଷିଙ୍କ ଦ୍ୱାରା ରାମ, ଲକ୍ଷ୍ମଣ ବଣକୁ ଆସି ତାଡକା ସୁବାହୁକୁ ବଧ କରି ମାରିଚକୁ ଶରରେ ଉଡାଇ ମିଥିଳା

ଅଭିମୁଖେ ଯାଇଛନ୍ତି । ପଥରେ ଅହଲ୍ୟାଙ୍କ ନିସ୍ତାର ଘଟିଛି । ମିଥିଳାକୁ ଗମନ ସମୟରେ ପଥରେ ଗଙ୍ଗାପାର ଦୃଶ୍ୟକୁ କବିଙ୍କ ଅମର ଲେଖନୀ ଅମର କରିଛି । ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ଏହି ଛାନ୍ଦକୁ ପ୍ରଥମେ ରେକର୍ଡ କରାଇ ଓଡିଶାରେ ଚହଳ ପକାଇ ଦେଇଥିଲେ । ଏହା ଥିଲା ଓଡିଆ ଗୀତର ପ୍ରଥମ ରେକଡ ଯାହାକି ଓଡିଶାର ସର୍ବତ୍ର ପରିଚିତ ।

"ବିତଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ
ହରେ ସୁରବର ତାପ ଚାରୁଧାରୀ ସେ
ବହେ ମକର କେତନ ଉଛନ୍ନ ରତି ସମାନ
ପୁରିତ ହୋଇଛି ପୁଣି ଅଶେଷ ରସେ
ଦିବ୍ୟ ହୈମବତୀ ପଦରେ
ବିଷକଣ୍ଠ ତୋଷ ଦାନୀ ବେଦି ମତରେ ।
ବିଷ୍ଣୁପଦୀ ବିଷ୍ଣୁପଦ ଇକାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚିତ
ବିଶାରଦ ସେ ସାମନ୍ତ ମତରେ ଦାସ ସେବିତ
ଡାକ ନ ଶୁଣନ୍ତେ ରଘୁନାଥ କଥିତ
ବିଷଧର ପ୍ରାୟକି ତୁହି
ବେଳ ନେତ୍ର ଡାଳି ଶୁଣ ଉଦାର ନୋହି ॥"

ଅର୍ଥ ଗାମ୍ଭୀର୍ଯ୍ୟ ଓ ଭାବର ରସରେ ପରିପ୍ଳୁତ କରି ଧୀବରର ପ୍ରଭୁଙ୍କର ପଦ ପ୍ରକ୍ଷାଳନକୁ କବି ଏକ ଅପରୂପ ଅନନ୍ୟ ସୌନ୍ଦର୍ଯ୍ୟରେ ସୃଷ୍ଟି କରିଛନ୍ତି । ଯଥା –

"ବଢାଇଦେଲେ ପୟର ଭାବଗ୍ରାହି ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି,
ବ୍ରହ୍ମାର ଧୌତ ଯେପଦ ବୋହିଛି ଶିବେ ବିଶାଦ
ନପାଇ ଚରଣାମୃତ ପାନକୁ ଇଛି
ବିଜ୍ଞାନୀ କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତ ପାବନ ନାମ ରହିଲା ॥"

ଏଠାରେ ପରଂବ୍ରହ୍ମଙ୍କର ଭାବଗ୍ରାହି ଓ ପତିତପାବନ ରୂପର ମନୋଜ୍ଞ ଚିତ୍ରଣ ହୋଇଛି । ମିଥିଳାରେ ପ୍ରବେଶ କରନ୍ତେ ସମସ୍ତଙ୍କ ମନରେ ଶିହିରଣ ଖେଳି ଯାଇଛି ଅନିନ୍ଦ୍ୟ, ଅପରୂପ ଶୋଭାପୁଞ୍ଜି ଭଗବାନ ରାମଚନ୍ଦ୍ରଙ୍କ ଦର୍ଶନରେ । କବିଙ୍କର ଭାଷାରେ -

"ବାହର ହେଲେ ମାର୍ଗର          ମାର୍ଗଣ କମାଣ ଧର
ମାର୍ଗଣ ଶୋଭା ଲେଶକୁ କନ୍ଦର୍ପ ଯାର
ବିଦେହ ମଣ୍ଡଳେ ପ୍ରବେଶ
ବାର ବେନିପୁରେ ସାର ମୋହନ ଫୁସ ।"

ଧନୁଭଙ୍ଗ ପୂର୍ବରୁ କବି ସୀତାଙ୍କ ମାନସିକ ସ୍ଥିତିର ପ୍ରକାଶ କରିଛନ୍ତି -

"ବୈଦେହୀ କମଳାଦେହି          କମଳ କେଶର ନାହିଁ
ସହି ସହିତ ଥିଲେ ମଣ୍ଡି ଅଟ୍ଟାଳି
ବିହିଲୋକନେ ପ୍ରଶଂସା       କଳାଙ୍ଗେ କଲେ ଲାଳସା,
ଗଭରେ ଗୌରବତା ନେତ୍ର ନଢାଳି
ବରଦେବର ସେ ମନାସେ,
ବରଦେବର ହେବାକୁ-ମାନସେ ଘୋଷେ ।
ବାମଲୋଚନ ସ୍ଫୁରିତା          ବାମ ମୋଚନ ବିଧାତା
ପାଞ୍ଚୁପୁଲକ ପୁଲକ କପୋଳ ଦିଶି
ବୃଦ୍ଧ ବୟଃ ସଂଗୀବାର          ଭାଙ୍ଗିବେ ଏ ଧନୁବର
ମନରେ ଏମନ୍ତ କରି ତା ଜାଣି ଭାଷି
ବ୍ୟକତ ଏମନ୍ତ ବଚନ
ବିଶ୍ୱାସ ନିଃଶ୍ୱାସ ହାସ ନାସା ବଦନ ।"

ଶିବଧନୁ ଭଙ୍ଗ, ସୀତା ବିବାହ, ପର୍ଶୁରାମଦର୍ପ ଦଳନ କରି ଅଯୋଧ୍ୟା ରାମଚନ୍ଦ୍ର ପ୍ରବେଶ କରିଛନ୍ତି । କିଛି ଦିନ ଅନ୍ତେ ଦଶରଥ ରାମଙ୍କ ରାଜ୍ୟାଭିଷେକର ପ୍ରସ୍ତାବ ରାଜ ଦରବାରରେ ଦେଇଛନ୍ତି ।

"ବସି ବିଶିଷ୍ଟ ଜାନକୀ ବାମଦେବ କଶ୍ୟପ ସୁମନ୍ତ ଘେନି

ବୋଲେ ଦଶରଥ ମୋର ମନୋରଥ ମଣ୍ଡାଇବୀ ରାଜଧନୀ
"ବୀର ବୃନ୍ଦରେ ଇନ୍ଦ୍ର
ବସୁ ନୃପପଦେ ରାମଚନ୍ଦ୍ର ।।"

ଜ୍ୟୋତିଷିକ ପ୍ରଭାବ ଓ ବକ୍ରୋକ୍ତିରେ କବି ଏଠାରେ ବର୍ଣ୍ଣନା କରିଛନ୍ତି -

"ବୁଝିଲେ ଲଗ୍ନ ମଗ୍ନ ହୋଇ ସୁଝିଲେ ଦାନରେ ତହିଁ
ବୃହସ୍ପତି ରାଶି ଅଷ୍ଟମେ ବଳାସୀ ନୃପତି ହୋଇବେ କେହି
ବାମଦେବ ଉତ୍ତର, ବକ୍ତା ବଶିଷ୍ଟ ହେବେ ଈଶ୍ୱର
ବିଷେକି ପୁଚ୍ଛୁ ରାଜା, ଦୀର୍ଘେ କହିଲେ ହେବ ଦିବ୍ୟଭୂତିଯୋଗ ।
ବଇ ଶ୍ରବଣକୁ ଜିଣିବେ ପୁଷ୍ପକ ମଣ୍ଡନ ହୋଇ ସରାଗ
ବୋଲୁ ଅଛୁଁ, ଏମନ୍ତ ବୋଧ ନରଦେବ ଦେବ ଚିତ୍ତ ।।"

ଅଭିଷେକ ପରିବର୍ତ୍ତେ ରାମଙ୍କୁ ଲକ୍ଷ୍ମଣ ଓ ସୀତାଙ୍କ ସହ ବନବାସ ଯିବାକୁ ପଡିଲା । ବହୁ ଆଶ୍ରମ ଭ୍ରମଣ ବହୁ ଦୁଷ୍ଟ ରାକ୍ଷସଙ୍କୁ ନିଧନ କଲେ । ଏହି ସମୟର ବନଶୋଭା ଓ ପ୍ରକୃତି ବର୍ଣ୍ଣନା କବି କରିଛନ୍ତି -

"ବିଭ୍ରାଜତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି
ବନୀ ବନୀ ବନିତାକି ପୁଷ୍ପ ହାରେ ଛଳି
ବୋଧେ ଶୃଙ୍ଖଳାରେ ରଘୁନାଥ ସୀତା ମତି
ବିଚିତ୍ର ଚିତ୍ର କୁଟ ଯେ କୁଟ ଜେବ୍ରତତୀ ।
ବାସନ୍ତି ସତି,ରେ ଫୁଲ ପୁଲରେ ପ୍ରବର୍ତ୍ତି
ବର୍ତ୍ତିକ ତିକ ଅଳି ଅଳି ଯେ ବହରିତ
ବିହରିତ ମାନ ମାନି ଶୁକ ସୁକବିତ ।।"

ପଞ୍ଚବଟିରେ ବାସ କରୁଥିବା ସମୟରେ ରାମଚନ୍ଦ୍ରଙ୍କର ମନ ମୁଗ୍ଧକର ଲାବଣ୍ୟ ରୂପରେ ସନ୍ଦର୍ଶନରେ ରାବଣଭଗ୍ନୀ ସୂପର୍ଣ୍ଣଖା କାମଜ୍ୱାଳାରେ ବିହ୍ୱଳିତ ହୋଇଛି । ତାର ଉପସ୍ଥାପନା କବି ନିଜସ୍ୱ ପାଣ୍ଡିତ୍ୟ ପୂର୍ଣ୍ଣ ଶୈଳୀରେ ରସସିକ୍ତ କରି ବର୍ଣ୍ଣନା ବିଳାସରେ ରସପୂର୍ଣ୍ଣ କରିଛନ୍ତି ।

"ବଣା ଧଇର୍ଯ୍ୟ ହୋଇସେ ରାମ ବଶରେ
ବିଚାରର ପୁନରୁତି ବଦାଭାସରେ
ବିହି ବିଧି ମଦନ କନ୍ଦର୍ପ କରିଣ
ବରକାନ୍ତ ପତି ମୋର ହୁଅନ୍ତେ ପୁଣ
ବାସର ଦିବସ ନିଶି ଲବ କରନ୍ତି
ବିଧୁନନ ରତି କରି ମତିତୋଷନ୍ତି ।।"

ରାମଚନ୍ଦ୍ରଙ୍କ ନିକଟରେ ସୂପର୍ଣ୍ଣଖା ପ୍ରେମ ନିବେଦନ କରି ନିଜ କାମ ଚାତୁରୀର କଳା ପ୍ରକାଶ କରିଛି ।

"ବଶୀଭୂତ ହୋଇବେ ଶୋଭାକୁ ଚାହିଁ
ବସିବାକୁ ତୁମ୍ଭ କୋଳେ ଆସିଛି ମୁହିଁ
ବନ୍ଧନ କରି ଭୂଜରେ ଜାଣଇ ସତ
ବନ୍ଧରେ ସୁଖ ଚକ୍ର ପୁରୁଷାନ୍ୱିତ ।
ବିଶ୍ରବା ନନ୍ଦିନୀ ମୁ କୁଳର ସାଧୁ
ବିସ୍ରବାଇ ଓଷ୍ଠପିଅ ମଧୁର ମଧୁ ।
ବକ୍ଷ ଜାତ ହରେ ଦେଲେ କମଳକର
ବକ୍ଷଲେ ସେ ଫଳେ ହେବ ରାଜା ସ୍ୱର୍ଗର
ବାର ବେନି ପୁରେ ରାଜା ମୋର ସୋଦର
ବାରତା ପାଇ ହେବେ ହରଷ ଭର
ବିନୋଦ ଯେଉଁ ରାମାରେ କରିବ ମତି,
ବିନୋଧ୍ୟ ନୋହୁଁ ଧରିବି ମୁଁ ସେହି ମୂର୍ତ୍ତି ।।"

ରାମଚନ୍ଦ୍ର କହିଲେ ସେ ଏକ ପତ୍ନି ବ୍ରତଧାରୀ ତାକୁ ଲକ୍ଷ୍ମଣ ପାଖକୁ ପ୍ରେରଣ କଲେ ଲକ୍ଷ୍ମଣ ଅସମ୍ମତି ପ୍ରକାଶ କରିବାରୁ ରାମଚନ୍ଦ୍ର ଶ୍ଳେଷାର୍ଥରେ ପତ୍ର ସୂପର୍ଣ୍ଣଖା ଦ୍ୱାରା ଦେଲେ –

"ବାବୁ ନାକଶିରି ଦାନ ଯୋଗ୍ୟ ଯୋଶାକୁ
ବିହର କାନ ନକର ଆଲିଙ୍ଗନକୁ ।।"

ଚିଠି ପାଇ ସୂପର୍ଣ୍ଣଖା ମହା ଆନନ୍ଦରେ ଲକ୍ଷ୍ମଣଙ୍କୁ ଦିଅନ୍ତେ ତାର ନାଶା କର୍ଣ୍ଣକୁ ଲକ୍ଷ୍ମଣ କାଟିଛନ୍ତି; କିନ୍ତୁ ଏହାର ମନୋଜ୍ଞ ଚିତ୍ରଣ କବିସମ୍ରାଟ କରିଛନ୍ତି -

"ବାହୁଟେକ ଉଠୁ ତର୍କି କାର୍ଯ୍ୟ ସଫଳ
ବାହେଯତି ଏହି କ୍ଷଣି କରିବ କୋଳ
ବାଳଧରୁ ବିଚାରିଲା କର୍ଣ୍ଣାଟ ନାରୀ
ବନ୍ଧ ସଂଯୋଗେ ନାୟକ ଏମନ୍ତ କରି ।
ବିଭୋଗି ଏହାଙ୍କ ଦେଶେ ଏ ରୂପେ ଫୁସେ
ବସୁଧାରେ ପାତୁଁ ଭାଳେ ରତି ପ୍ରକାଶେ ।
ବିଚ୍ଛେଦ ନାଶା ଶ୍ରବଣ ଭବେ ରଚିଲା
ବିଘାତୁଁ ସିଂହ ହସ୍ତିନୀ ଲକ୍ଷ୍ୟ ଘଟିଲା ।"

ସୂପର୍ଣ୍ଣଖାର ରକ୍ଷାକାରୀ ଖର ଦୂଷଣ ସହ ବହୁ ଦୈତ୍ୟ ନିହତ ହୁଅନ୍ତେ ସେ ଲଙ୍କାରେ ପ୍ରବେଶ କରି ରାବଣଙ୍କୁ କହିଛି ସେ ପରମା ସୁନ୍ଦରୀ ସୀତାଙ୍କୁ ଆଣିବାକୁ ଗଲାବେଳେ ରାମଲକ୍ଷ୍ମଣ ତାର ଏହି ଅବସ୍ଥା କରିଛନ୍ତି । ସୀତାଙ୍କର ସୌନ୍ଦର୍ଯ୍ୟକୁ ରାବଣ ଆଗରେ ବର୍ଣ୍ଣନା କରିଛି ।

"ବ୍ରହ୍ମାଣ୍ଡ ଲକ୍ଷରେ ଖୋଜିଲେ ଲକ୍ଷ୍ୟରେ ନଥିବେ ସୁନ୍ଦରୀ
ବିହେନୃତ୍ୟ ଆସି ରମ୍ଭା ଉରୁବଶୀ ତୋ ଆଗେ ଦେଖିଛି
ବନିତା ମଣି ଦାସୀ ପଣେ ନଗଣି ମୋ ମନେ ରଖିଛି ।
X X X X X X X
ବର ଦେବରଙ୍କୁ ମାରୀ ଆଣନ୍ତି ତୋ ପାଇଁ
ବିକୃତ ରୂପ ଯାଉଁ ତାଙ୍କ ସମୀପେ ଏଦଣ୍ଡ ସେ ଦେଇ"

ରାବଣ ଶୁଣି କୋପାନଳରେ ଜର୍ଜରିତ ହୋଇ ସୂପର୍ଣ୍ଣଖାକୁ କହିଛି -

"ବଇ ଶ୍ରବଣ ଶ୍ରବଣ କରି କହେ ହେବକି ଜାନକୀ
ବିଶ୍ୱ ପ୍ରପଞ୍ଚରେ ଏଡେ ସୁ ସଞ୍ଚରେ ସୌନ୍ଦର୍ଯ୍ୟ ଅନକୀ ।
X X X X X X X
ବଳେ ବା କିତବେ ତା ଅବଳା ଏବେ ଆଣିବି ମୁଁ ହରି
ବନେ ବେନି ଭ୍ରତା ହତ ହେବେ ଭକ୍ଷ ତୁ ବିହରି ।"

ରାବଣ ମାରିଚକୁ ସ୍ୱର୍ଣ୍ଣ ମୃଗହୋଇ ମାୟା ଦେଖାଇବାକୁ ପ୍ରବର୍ତ୍ତାଇଛି । କିନ୍ତୁ ମାରୀଚ ଏହା ନକରିବାକୁ ଉପଦେଶ ଦେଇଛି । ମାତ୍ର ରାବଣ ତାକୁ ମରଣ ଭୟ ଦେଖାଇବାରୁ ସେ ସମ୍ମତି ପ୍ରକାଶ କରିଛି । କବିଙ୍କ ଭାଷାରେ -

"ବିଚାରିଲା ତାଡକେୟ , ଏ ମାଇଲେ ହୋଇବି ଅମୋକ୍ଷ
ବୈକୁଣ୍ଠ ଗମନ୍ତି ରାମ କରୁଁ, ଦେଖୁଛି ପ୍ରତ୍ୟକ୍ଷ ।
ବଳିଆଇ କହି ଆଗମୁହିଁ ତୁହି ମରିବୁ ପଛରେ
ବାରି ତାତି ଝସ ସୁଖି ଗ୍ରାହ ବଂଶ ଯେସନ କାଶାରେ ।"

ହେମ ମୃଗ ଦେଖି ସୀତା ପ୍ରଲୁବ୍ଧ ହୋଇ ରାମଙ୍କୁ ଆଣିବା ପାଇଁ ଅନୁରୋଧ କରନ୍ତେ ଲକ୍ଷ୍ମଣ ବାଧା ଦେଇଛନ୍ତି । କିନ୍ତୁ ଶ୍ରୀରାମ ମୃଗବଧ ନିମିତ୍ତ ଯାଇଛନ୍ତି । ମୃଗ ପ୍ରାଣ ଗଲା ବେଳେ ତ୍ରାହି ଲକ୍ଷ୍ମଣ ଶବ୍ଦ କରିଛି । କବିଙ୍କ ଭାଷାରେ -

"ବାଜି ବାଜିବାରେ ତ୍ରାହି ଲକ୍ଷ୍ମଣ ଶବଦ
ବିରଚନେ ରାମ ରାମ ହୋଇଲେ ସ୍ତବଧ ।
ବିହରିଲା ନରବଣୀ, ବିପଦ ନପୁଣ ଉପସ୍ଥିତ ହୁଏ ପୁଣି ।"

ଲକ୍ଷ୍ମଣ କୁଟୀରରୁ ଆସନ୍ତେ ରାବଣ ସୀତାଙ୍କୁ ହରଣ କରିଛି । ଜଟାୟୁ ରାବଣ ସହ ଯୁଦ୍ଧ କରି ପ୍ରାଣ ଦେଇଛି । ରାମ ଲକ୍ଷ୍ମଣ କୁଟୀରକୁ ଆସି ସୀତାଙ୍କୁ ଖୋଜି ଖୋଜି ଆହତ-କ୍ଷତ ବିକ୍ଷତ ଜଟାୟୁକୁ ଦେଖିଛନ୍ତି ଓ ତା ଠାରୁ ସୀତାଙ୍କୁ ଅପହରଣ କରିଥିବାର ବାର୍ତ୍ତା ପାଇଛନ୍ତି ।

"ବିଭୋ କୋଦଣ୍ଡ ଧାରଣ
ବୈଦେହୀ ଘେନି ଗଲାଟି ଲଙ୍କାର ରାବଣ
ବିବାଦେ ମୁଁ ଭାଙ୍ଗିଲି ଶତାଙ୍ଗ ମୋତେ ହାଣି
ବସାଇ ପୁଷ୍ପକେ ଘେନି ଗଲା ରାମାମଣି
ବସା ମଧ୍ୟରୁ କପୋତି, ବନ୍ଦିକରେ ଜାଲେ ଯଥା ଲବ୍ଧକେ ନିଆନ୍ତି ।
ବିଜେକର ଦକ୍ଷଣେ ଦକ୍ଷିଣେ ତୁମ୍ଭ ଗୁଣେ
ବିଂଶକର ପ୍ରାଣକ୍ଷୀଣକର ତୀକ୍ଷ୍ଣ ବାଣେ ।

ବୋଲି ବସର୍ଜିଲା ଜୀବ,
ବିହାୟସେ ରହି ଦିବ୍ୟରୁପେ କଲାସ୍ତବ ।"

ବହୁ ନଦୀ, ଗିରି, କାନନ, ପ୍ରାନ୍ତରରେ ରାମଚନ୍ଦ୍ର ଆକୁଳରେ ସୀତାଙ୍କ ସନ୍ଧାନ କରିଛନ୍ତି । କବିଙ୍କ ଭାଷାରେ -

"ବନେ ଭ୍ରମେ ରଘୁମଣି ବିପଥ ପଥ ନଗଣି
ବନପୂର୍ଣ୍ଣ ଅନୁକ୍ଷଣ, ବେନି ଇକ୍ଷଣ ଯେ
ବିଚ୍ଛନ୍ନ ମନ ଉଛିତ ବନେ ଭବେ ରଚିତ
ବିଚ୍ଛେଦ ହେଲୁ ଈଷତେ, ବୈଦେହୀ ସୀତେ ଯେ ।"

କବନ୍ଧକୁ ବଧ କରି ତା ଠାରୁ ସୀତାଙ୍କ ସନ୍ଦେଶ ପ୍ରାପ୍ତ ହୋଇଛନ୍ତି । ସୀତାଙ୍କୁ ଖୋଜିବା ସମୟରେ ବହୁ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି, ସେଥି ମଧ୍ୟରୁ ଏକ ବକ ଚରିତ । ସେ କହିଛି ସୀତାଙ୍କ ପାଇଁ ଯେପରି ଶୋକ କରିବା କଥା ସେ କରିପାରୁ ନାହାନ୍ତି ।

"ବକେ ବସିଥିଲା ଧ୍ରୁବ ଉପରେ
ବିଷ୍ଣୁପଦକୁ ହେଜିଲା ଉତ୍ତାରେ
ବଳକ୍ଷ ପକ୍ଷକୁ ଅଙ୍ଗରେ ବହି
ବକତା ଏ ଗୀର, ବିଶ୍ରମ ବାର୍ତ୍ତା କହିବାଛାମୁର
ବାହୁନ ଅଛି ଯେଉଁ ରମଣୀଏ
ବିଶେଷ ଶୋଭାତହୁଁ ରମଣୀଏ
ବିଂଶ ବାହୁ ରଥେ
ବିଲୋକିଛି ଗଲା ଦକ୍ଷିଣା ପଥେ ।"

ଗୋପାଳ କ୍ଷୀର ଦେବା ପ୍ରସଙ୍ଗ, ଶବରୀଠାରୁ ଅଇଁଠା କୋଳି ଖାଇବା ଇତ୍ୟାଦି ପରେ ହନୁମାନ ସହ ଭେଟ ହୋଇ ସୁଗ୍ରୀବ ସହ ମିଶିଛନ୍ତି ଓ ଦୁହେଁ ମଇତ୍ର ହୋଇଛନ୍ତି । ରାମଙ୍କ ଭକ୍ତିକୁ କବି ମିତ୍ରତା ସ୍ଥାପନରେ ପାରିପାର୍ଶ୍ୱିକ, ମାନସିକ, ସର୍ବବିଧ ଅବସ୍ଥାର କିପରି ହେବା ବିଧେୟ, ଏହି ତାତ୍ପର୍ଯ୍ୟର ମହତ୍ତ୍ୱକୁ ନିଜର ଅମର ଲେଖନୀରେ ଅମର କରିଛନ୍ତି ।

"ବୋଲେ ସୁଗ୍ରୀବ ରାମ କ୍ଳେଶ ଭାଷା
ବେନି ଜନେ ପଡିଛି ଏକ ଦଶା ।
ବିଭା ବସୁ ବଂଶେ ଜାତ ଆମ୍ଭର
ବିଧିରେ ତ ତୁମ୍ଭେ ତାଙ୍କ କୁମର ।
ବସୁ ଅଯୋଧ୍ୟା କିଷ୍କିନ୍ଧା ରାଜନ
ବି ଭୁତିରେ ବନେ ହେଲା ସଦନ ।
ବାମା ବିଚ୍ଛେଦ ପର ଧରଷଣେ
ବଞ୍ଚୁ ଦିନ ଫଳ ମୂଳ ଭକ୍ଷଣେ ।
ବଞ୍ଚୁ ଅନୁଜ ମନ୍ତ୍ରୀ ପ୍ରବୋଧନେ
ବୋଧ ହୋଇ ରହିଥାଉ ଜୀବନେ ।
ବାଧା ମାତା ଭ୍ରାତାରେ ଉପଜିଛି
ବଇରିକି ସଧିବା ଇଛା ଅଛି ।
ବ୍ୟବହାରେ ମିତ୍ର ହେବା ଉଚିତ
ବୋଇଲେ ସୁଗ୍ରୀବ ଶୁଣ ରଘୁସୁତ ।"

ଏଭଳି ମିତ୍ରତାର ବର୍ଣ୍ଣନା କୌଣସି ବିଶିଷ୍ଟ ରାମକଥା ବର୍ଣ୍ଣନାରେ ଦୃଷ୍ଟିଗୋଚର ହୁଏ ନାହିଁ । ରାମ ନିଜର ଶପଥ ରକ୍ଷାକରି ସୁଗ୍ରୀବଙ୍କୁ ରାଜା ଓ ଅଙ୍ଗଦଙ୍କୁ କିଷ୍କିନ୍ଧାର ଯୁବରାଜରେ ଅଭିଷିକ୍ତ କରାଇଛନ୍ତି ।

ରାବଣ ସୀତାଙ୍କୁ ନେଇ ଅଶୋକ ବାଟିକାରେ ସ୍ତ୍ରୀ ପ୍ରହରୀ ବେଷ୍ଟିତ କରି ଓ ସେମାନେ କିପରି ରାବଣ ପ୍ରତି ସୀତାଙ୍କ ମନରେ ଅନୁରାଗ ସୃଷ୍ଟି କରିବେ, ତାହାର ନିର୍ଦ୍ଦେଶ ଦେଇଥିଲା । ରାବଣ ଗୁପ୍ତଚର ଠାରୁ ସୀତାଙ୍କୁ ଉଦ୍ଧାରପାଇଁ ଚେଷ୍ଟିତ ହେଉଛନ୍ତି ଜାଣିଲା ପରେ ସୀତାଙ୍କୁ ଭୟଭୀତ କରି ପ୍ରଲୁବ୍ଧ କରିବାକୁ ଯାଇଛି ସେତେବେଳେ ହନୁମାନ ସୀତାଙ୍କ ସନ୍ଧାନରେ ଲଙ୍କାରେ ଅବସ୍ଥିତ ଅଛନ୍ତି । କବିଙ୍କ ଚମତ୍କାରିତା ପୂର୍ଣ୍ଣ ପଦାବଳୀରେ

"ବୁଧେ ଶୁଣିମା ହେଉ ସୁବୁଧି
ବଇ ଶ୍ରବଣେ ଲଙ୍କାଧିପତି

ବହିଲା ସନ୍ଦେଶ ହେଲାଟି ଜୀବେଶ
ବାର୍ତ୍ତା ପ୍ରବେଶ ଜାନକୀ କତିରେ ବିଶାଂକ୍ଷ ।
ବସି ସପନୁ ଚେତି କମ୍ପନ
ବାହାରିଲା ସେ ଅଶୋକବନ
ବହୁତ ଦିହୁଡି ଅନ୍ଧାର ଘଉଡି ଶୁଭେ ମଣିମା ମଣିମା ଶ୍ୱନସେ ବିଧିରେ
ବୁଲାଉଛି ଚକ୍ର ପ୍ରାୟ ନେତ୍ର
ବହି ଶୂଳ ଅଶି ଗଦାପତ୍ର
ବିଂଶାର୍ଦ୍ଧ ଆନନ ଶୋଭା ଆନ ଆନ ଅନନ ଲଙ୍ଘେ ଯଦେବ ଗୋତ୍ର ସେ ବିଂଶାଂକ୍ଷ ।"

ହନୁମାନ ଲୁଚିକରି ସବୁ ଦେଖୁଥିଲା । ଶେଷରେ ବାହୁଡିଲା ବେଳେ ଧମକ ପୂର୍ଣ୍ଣ ଭାଷାରେ ରାବଣ ସୀତାଙ୍କୁ କହିଛି । ଯଥା -

"ବୋଇଲା ଯେ ଏ ମାସେ ରମଣୀ
ବଲ୍ଲଭକୁ ନପାରିଲେ ଅଣି
ବିଧିକ ଅବିଧି ଚନ୍ଦ୍ରହାସ ଘେନି, ଚନ୍ଦ୍ରହାସ ଶୋଭିଥାଅ ଜାଣିରେ
ବାହୁଡିଲା ସେ ସକ୍ରୋଧ ହୋଇ
ବାଟେ ରାକ୍ଷସୀ ମାନଙ୍କୁ କହି ।
ବଶତ ନୋହିଲା ସ୍ନେହରେ କହନ୍ତେ
ଏବେ ରହରେ ଭୟ ଦେଖାଇ ।"

କିନ୍ତୁ ଅସୁରୀ ମାନଙ୍କ ମଧରେ ତ୍ରିଜଟା ବିଚାର ବୁଦ୍ଧି ସମ୍ପନ୍ନ ଥିଲା । ସେ ସୀତାଙ୍କୁ ପ୍ରବୋଧନା ଦେଉଥିଲା । ଅସୁରୀମାନେ ସୀତାଙ୍କୁ ବିଭିନ୍ନ ପ୍ରଲୋଭିତ କରିବାକୁ ଚେଷ୍ଟା କରୁଥିବା ସମୟରେ ସୀତା ସେମାନଙ୍କୁ କହିଛନ୍ତି -

"ବୋଲେ ସୀତା ସିତାଂଶୁ ସୁମୁଖି
ବରୁଣ ଦିଗେ କି ତରୁଣ ଅରୁଣ ଉଦେ ହୋଇଛି
କେ ଅଛି ଦେଖ, ଗୋ ବାମାଏ
ବିକଶିତକି ଶିଖରୀ ଶିଖେ, ବିନାବାରିରେ ପଦ୍ମତା ସୁଖେ

ବନ୍ଧନ ଆଶ ବନ୍ଧରେ କୁଞ୍ଜର ଶୁଣ ପ୍ରବନ୍ଧକି ମୁର୍ଖ ମୁଖେ ଗୋ
ବଳି ପଡି ଏମାନଙ୍କ ହେବ ବଇଦେହୀ ଚିତ୍ତ ନ ଟଳିବ
ବିନା ଶ୍ରୀରାମରେ କୋଟିଏ କାମରେ, ଏତ ପାମର କି ସମ୍ଭିବ ଗୋ ।"

ଏହାପରେ ପରମ ଭକ୍ତ ହନୁମାନ ଲୁକାୟିତ ଭାବେ ରାମଙ୍କ କଥା ଗାୟନ କରିଛି ।

"ବୋଲେ ଦାଶରଥି ଚାପଧାରୀ ବନଦଣ୍ଡକେ ବିହରି
ବହେ ନାମ ଶ୍ରୀରାମ ରାଘବ ରାମ ଭଦ୍ରକରି ସେ ବିଧାତା ।
ବନ୍ଧୁ ପ୍ରାଣରେ ପୃଥ୍ୱୀ କୁମାରୀ ବିସର୍ଜନା କି ଦିବା ଶର୍ବରୀ
ବିଚକ୍ଷଣ ସେ ଲକ୍ଷ୍ମଣ ରେ ରକ୍ଷଣ ଭାତ୍ର ଲକ୍ଷ୍ମଣ ହି ଅନୁସରୀରେ ବିଧାତା ।
ବାଳାଗଳା ମାଳା ହୋଇଥିଲା ବିଚ୍ଛେଦତା କେ ଚୋରି କଲା
ବାରତା ଶ୍ରବଣ ରାବଣ ଦ୍ରବିଣ କ୍ରମେ ସୁଗ୍ରୀବ ସଂଯୋଗ ହେଲାହେ ବିଧାତା ।"

ହନୁମାନଙ୍କ କଥା ଶୁଣି ସୀତା ତାଙ୍କୁ ପାଖକୁ ଡାକିଲେ -

"ବାଳୀ ମୃତ ପିଣ୍ଡ ହୋଇଥିଲା ବଚ ସଞ୍ଜିବନୀ ମନ୍ତ୍ର ହେଲା
ବାହିଲା ଜାଣ ଶୁଷ୍କ କଣ୍ଠେ ରହିଲା ନାହିଁ କହିବାର ଆରମ୍ଭିଲା ସେ ବୈଦେହୀ
ବାବୁ କେ ତୁମ୍ଭେ ପାଖକୁ ଆସ ବେଗେ ପୂର୍ଣ୍ଣକର ମୋର ଆଶ
ବନେ ସଲିଳ ସେଚନ ରଚନ ତାପ ମୋଚନକୁ ହେଲା ଲେଶସେ ବିଶେଷ ।"

ସୀତା ପ୍ରଥମେ ମାୟା ମର୍କଟ ବୋଲି ବିଚାରିଛନ୍ତି । ହନୁମାନଜୀ ରାମଚନ୍ଦ୍ର-ସୀତାଙ୍କ ମଧ୍ୟରେ ଘଟିଥିବା କେତୋଟି ଗୋପନୀ କଥା କହି ରାମଚନ୍ଦ୍ର ପ୍ରଦତ୍ତ ମୁଦ୍ରିକା ପ୍ରଦାନ କରିଛନ୍ତି ବିଶ୍ୱାସ ଜନ୍ମାଇଛନ୍ତି । ସୀତା ନିଜର ମଥାମଣିକୁ ଦେଇଛନ୍ତି । ଏହାପରେ ହନୁମାନ ରାବଣର ଉପବନରେ ପ୍ରବେଶ କରି ପକ୍ୱଫଳ ଭକ୍ଷଣ କରି ସେଠାରେ ବୃକ୍ଷଲତାକୁ ଧ୍ୱଂସ କରିଛନ୍ତି । ସେଠାରେ ରାବଣ ପୁତ୍ର ଅକ୍ଷୟ କୁମାର ସମେତ ବହୁ ଦୈତ୍ୟଙ୍କୁ ନିଧନ କରିଛନ୍ତି । ଶେଷରେ ଇନ୍ଦ୍ରଜିତ ଦ୍ୱାରା ବନ୍ଧା ହୋଇ ରାବଣ ଦରବାରରେ ପ୍ରବେଶ କରିଛନ୍ତି । ରାବଣ ଦ୍ୱାରା ବହୁ ଅସ୍ତ୍ରରେ ଆଘାତରେ ମଧ୍ୟ ସେ ଅକ୍ଷୁର୍ଣ୍ଣ ରହିଛନ୍ତି ଓ କହିଛନ୍ତି ପ୍ରଭୁ ରାମଚନ୍ଦ୍ର ଧନୁ ଛୁଇଁ ରାବଣ ମାରିବାର

ପ୍ରତିଜ୍ଞା କରିଛନ୍ତି ନହେଲେ ତାର ବିଂଶ ବାହୁ ଉପାଟି ତାର ଦଶ ଶିରକୁ ମୋଡି ଦିଅନ୍ତେ । ହନୁମାନଙ୍କୁ ବଧ କରିବାକୁ ରାବଣ କହନ୍ତେ ଦୂତ ଅବଧ କହି ବିଭିଷଣ ବିରୋଧ କରିଛନ୍ତି ଓ ରାବଣ ନିର୍ଦ୍ଦେଶରେ ହନୁମାନଙ୍କ ପୁଚ୍ଛରେ ଅଗ୍ନି ସଂଯୋଗ କରାଯାଇଛି ଯାହା ଫଳରେ ହନୁମାନ ଲଙ୍କାଙ୍କୁ ଦହନ କରି ଧ୍ୱଂସ କରିଛନ୍ତି । ଏହାପରେ ରାମଚନ୍ଦ୍ର ସୀତାଙ୍କ ସନ୍ଦେଶ ପାଇ ନଳନୀଳ ସାହାଯ୍ୟରେ ସେତୁବନ୍ଧ ନିର୍ମାଣ କରି ଲଙ୍କା ନିକଟସ୍ଥ ସୁବଳଯ୍ୟା ଗିରିରେ ଅବସ୍ଥାନ କରିଛନ୍ତି । ବିଭିଷଣ ଲଙ୍କାରୁ ବିତାଡିତ ହୋଇ ରାମଚନ୍ଦ୍ରଙ୍କୁ ଶରଣାପନ୍ନ ହୋଇଛନ୍ତି । ଅଙ୍ଗଦ ପୁଣି ଦୂତ ହୋଇ ଲଙ୍କାକୁ ଯାଇଛି ଓ ରାବଣକୁ ଅପମାନିତ କରି ଫେରିଛି । ରାବଣ ପୁଅ ଇନ୍ଦ୍ରଜିତ, ଭାଇ କୁମ୍ଭକର୍ଣ୍ଣ ଇତ୍ୟାଦିଙ୍କ ସହ ସବଂଶକୁ ଯୁଦ୍ଧରେ ହରାଇଛି ଓ ଶେଷରେ ତାର ନିଧନ ହୋଇଛି । ଦଶାନନର ଶୁଦ୍ଧି କ୍ରିୟା କରି ରାମଚନ୍ଦ୍ରଙ୍କ ନିର୍ଦ୍ଦେଶରେ ମନ୍ଦୋଦରୀ ସହ ବିଭୀଷଣଙ୍କର ଲଙ୍କାରେ ରାଜ୍ୟାଭିଷେକ ସଂପନ୍ନ ହୋଇଛି । ରାମଚନ୍ଦ୍ରଙ୍କ ନିର୍ଦ୍ଦେଶରେ ସୀତାଙ୍କୁ ଅଶୋକବନରୁ ଅଣାଇ ଅଗ୍ନି ପରୀକ୍ଷା କରାଯାଇଛି । କବିଙ୍କ ଭାଷାରେ –

"ବୈଦେହୀ ଗୁଣ ଗର୍ବିତା ହୋଇ ଭାଷେ ସୁବର୍ଣ୍ଣ ବର୍ଣ୍ଣନା ଯାହାର
ବୋଲୁଁ ଶୁଣି ହୁଡି ଅଛି ତହିଁରେ
ବୋଧିଲେ ଲେଖକେ ସିନା ହୋଇ ମୁହିଁ
କହିଛି ଆନ ପ୍ରକାର ହେ ବିଚାର
ଆଡି ହୋତ୍ରେ ପରୀକ୍ଷା ଜଣାତାର ବୋଲେ ସାଧବୀ କଲେ ସୀଉକାର
ବଣିକ ଭାବେ ଇନ୍ଧନ କୁଟେ ଅଗ୍ନି ଯୋଗେ ଝାସିଲେ ସେ ସୂତର ସେବରାଙ୍ଗୀ ।"

ସୀତା ଅଶୋକ ବାଟିକାରୁ ଆସିଲା ବେଳେ ରାମଚନ୍ଦ୍ରଙ୍କ ମନ ସୂର୍ଯ୍ୟକାନ୍ତ ମଣି ପରି ହୋଇଥିଲା କିନ୍ତୁ ଅଗ୍ନିରେ ପ୍ରବେଶ କରନ୍ତେ ତାହା ଚନ୍ଦ୍ରକାନ୍ତ ମଣିରେ ପରିଣତ ହେଲା । କବିଙ୍କ ଭାଷାରେ –

"ବିଭାକର ମଣି ସେ ହୋଇଥିଲେ
ବଧୂ ମଣି ଭାବ ପୁଣି ବହିଲେ
ବିଷ୍ଣ ବିଟା ପ୍ରିତିରେ ଦୁଇ କଥା ଜଳିଲେ
ପୁଣି ଦ୍ରବିଲେ ସେ ବିକଳେ ।"

ସୀତା ଅଗ୍ନିରେ ପ୍ରବେଶ କରନ୍ତେ ସକଳ ଦେବଗଣ, ପିତୃଗଣ ସହ ପିତୃଲୋକରୁ ଦଶରଥ ଆସିଗଲେ । ରାମଚନ୍ଦ୍ର ବିକଳ ଭାବରେ କହିଛନ୍ତି -

ବାରିଦ ଅଙ୍କରେ ଲୀନ ହୋଇଥିଲେ
ପ୍ରକାଶରେ ଯଥା ଚଞ୍ଚଳା
ବିକାଶିବୁ ମୋ ଭାଗ୍ୟେ ସେହି ଲିଳା
ବୋଲିବାକୁ ଜଳମଗ୍ନ ଜନପ୍ରାୟ
ବାହାର ହେଲେ ନିର୍ମଳା ସେ ବରାଙ୍ଗୀ
ବେଢିଥିଲେ ଜନେ ଜୟ ଘୋଷିଲେ
ବିଧି ରାହୁ ମୁଖୁ ମୁକ୍ତ ଭାଷିଲେ ।

ରାମାୟଣର ସୀତା ଚରିତ୍ର ଏକ ବିରଳ ଦୃଷ୍ଟାନ୍ତ । ସୀତାଙ୍କ ପରି ପତ୍ନି ଓ ଯଶୋଦାଙ୍କ ପରି ମା ପୃଥିବୀ ସାହିତ୍ୟରେ ବିରଳ । ସୀତା ଏକାମାତ୍ର ପୁଣ୍ୟ ଶ୍ଳୋକା, ଯାହାଙ୍କ ନାମ ଉଚ୍ଚାରଣ ମାତ୍ରକେ ପାପଧୌତ ହୋଇ ପୁଣ୍ୟବନ୍ତ କରିଥାଏ । ସୀତା-ପବିତ୍ର, ସୀତା-ମଧୁର, ସୀତା-ଲଙ୍ଗଳ ତେଣୁ ସୀତାଙ୍କ ନାମରେ ପବିତ୍ରତା, ମାଧୁର୍ଯ୍ୟ ପୂର୍ଣ୍ଣକରି ଲଙ୍ଗଳରେ ହୃଦୟକୁ କର୍ଷଣ କରି ସ୍ନେହବୀଜ ରୋପଣ କରେ । ତେଣୁ କବି ସମ୍ରାଟ ସୀତାଙ୍କ ନାମର ସାର୍ଥକତା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି -

"ବିଧାନ ହୋଇଛି ଯା ନାସ ସୀତା
ବର୍ଣ୍ଣନେ ଶୋଭା ଅତି ମଧୁରତା
ବୁଦ୍ଧି ନେତ୍ର ତହିଁ ହେବ ପବିତ୍ର
ବିଶେଷ କର୍ଷି ଦେଇ ହୃଦ କ୍ଷେତ୍ରସେ
ବୁଣିଲାଣି ସ୍ନେହ ବୀଜ ଯେ
ବିଚାରୁ ଏମନ୍ତ ଜନକ ସନ୍ନମତ ଶୁଣିଲେ ସଖି ସମାଜଯେ ।"

ସୀତା କମନୀୟକାନ୍ତି ଧାରଣ କରି ଅଗ୍ନିରୁ ବାହାରିଲା ପରେ ପୁଷ୍ପକ ବିମାନରେ ବିଭିଷଣ, ସୁଗ୍ରୀବ, ହନୁମାନ, ଜାମ୍ବବାନ ଇତ୍ୟାଦିଙ୍କ ସହ ଆସି ପଥରେ ଭରଦ୍ୱାଜ ମୁନ ଓ ମିତ୍ର ଗୁହକ ଶବରକୁ ସାକ୍ଷତ କରି ଅଯୋଧାରେ ପହଞ୍ଚି ଅଭିଷିକ୍ତ

ହୋଇଛନ୍ତି । ରାମଚନ୍ଦ୍ରଙ୍କ ସତ୍ୟ ନିଷ୍ଠତା, ବିମଳତା, କଠୋର କର୍ତ୍ତବ୍ୟ ପରାୟଣତା, ସୌଜନ୍ୟତା, ଶୀଳତ, ଅପରୂପ ଭକ୍ତ ବତ୍ସଳତା ସହ ବିଭିନ୍ନ ରସର ଅନୁସରଣ କରି ସେଥିରେ ସରସ ସୁନ୍ଦର କାନ୍ତ କୋମଳ ପଦାବଳୀ ସନ୍ନିବେଶିତ କରି ନିଜର ବର୍ଣ୍ଣନାକୁ ଅପୂର୍ବର ସରେ ରସାଣିତ କରି ପାଠକ ମନକୁ ଆଚ୍ଛନ୍ନ ରଖିବାରେ ସକ୍ଷମ ହୋଇଛନ୍ତି ।

ବନବାସ କଷ୍ଟକୁ ସୀତା ବିଧାତାଙ୍କ ଏକ କୃର ପରିହାସ କହିବାରେ ଏହାକୁ ଏକ ସୁଖ ବିଧାନର ବ୍ୟବସ୍ଥା ବିଧାତା କରିଛି ବୋଲି ରାମଚନ୍ଦ୍ର ବୁଝାଇଛନ୍ତି । ବିଚିତ୍ର ରୂପେ କବି ଏହାର ଉପସ୍ଥାପନା କରିଛନ୍ତି -

"ବୋଇଲେ ସୀତା ଶୀତାଂଶୁ ମୁଖି ଏକ ଦିନେ ଅତି ଦୀନ ହୋଇ
ବିହି ବହିଲା ବନବାସ ବାସରେ ନୃପତି ହେବାର ଯାଇ
ବିଳସାଇ ଯଥା ଅଳକା ତେଜାଇ ଈଶ୍ୱରଙ୍କୁ ଶମସାନେ
ବିଷ୍ଣୁଙ୍କୁ ରତନ ପଲଙ୍କ ଛଡାଇ ଜଡାଇ ସର୍ପ ଶୟନେ ।
ବିସୋରୀ ନପାରି ଅଭିଧି ବିଧିକି କିମ୍ପାଏ ବୋଲାଏ ବିଧି
ବସାଇ କୋଳେ ଶ୍ରୀରାମ ଭାଷେ ଭୋଳେ ରସାଇ ଲାବଣ୍ୟ ନିଧି ।
ବିରଞ୍ଚି ଏକାନ୍ତ ବୋଲିଟି ତତେ ମୋତେ ବନେ ବିହରାଇ ରଙ୍ଗେ ।"

ବିଶୁଦ୍ଧ ଆର୍ଯ୍ୟ ଜୀବନର ପରମ୍ପରାର ମହତ୍ୱ ପ୍ରତି ପଦରେ ରକ୍ଷା କରି ଅପ୍ରତିଦ୍ୱନ୍ଦି ଚମତ୍କାରିତା ସୃଷ୍ଟି କରିଯାଇଛନ୍ତି ।

ବୈଦେହୀଶ ବିଳାସ ନାମକରଣ ଯେପରି ଭିନ୍ନ ଦୃଷ୍ଟିଭଙ୍ଗୀର ପରିଚୟ ଦିଏ, ବହି ପ୍ରକୃତି ସହ ଅନ୍ତ ପ୍ରକୃତିର ସମନ୍ୱୟତା ସହ ଦିବ୍ୟଚିନ୍ତା, ଦିବ୍ୟ ରସାନୁବୋଧର ପରି ପ୍ରକାଶ କରେ । ବିଷୟବସ୍ତୁର ଯଥାଯଥ ଯୋଜନା ପରିପ୍ରକାଶ, ମହାଭାରତୀୟ ପରମ୍ପରାର ରକ୍ଷା ସହ ମାନବୋଚିତ ଆଦର୍ଶର ପରିପ୍ରସାର କାବ୍ୟରେ ପରିସ୍ଫୁଟନ ହୋଇଅଛି । ଖଳ ଚରିତ୍ରର ପତନ, ନିନ୍ଦନରେ, ପୁଣ୍ୟ ଚରିତ୍ରର ବିଜୟ ଓ ଯଶଗାନରେ କବି ଶତମୁଖ ହୋଇଉଠିଛନ୍ତି । ବୈଦେହୀଶ ବିଳାସରେ ଶବ୍ଦ ଯୋଜନାର ପଟ୍ଟାନ୍ତର ନାହିଁ । 'ବ' ଅନୁପ୍ରାସରେ

ଲିଖିତ ହୋଇ ଏହା ତାଙ୍କର 'ମୁଁ ହୋଇଛି ଶବଦ ସାଗର ପାର' ଉକ୍ତିର ଜ୍ୱଳନ୍ତ ପ୍ରମାଣ । ଏହି କାବ୍ୟର ମନୋରମ ପଦାବଳୀରେ ଆଭୁଷିତ ହୋଇ ଯୁଗେ ଯୁଗେ ଓଡିଆ ପ୍ରାଣରେ ପୁଲକ ସୃଷ୍ଟି କରି ଚାଲିଥିବ ।

ଅର୍ଥ ଗାମ୍ଭିର୍ଯ୍ୟତା ସହ ଶବ୍ଦ ଓ ଛାନ୍ଦ ବିନ୍ୟାସ ଖୁବ୍ ଆକର୍ଷଣୀୟ ହୋଇଛି । ଗଙ୍ଗାରେ ନୌଯାତ୍ରା ପ୍ରସଙ୍ଗରେ ଭାବଗ୍ରାହି ଶବ୍ଦ ପ୍ରୟୋଗକରି ଯେଉଁ ଭାବନା ପ୍ରକାଶ କରିଛନ୍ତି ତାହାର ତୁଳନା ନାହିଁ ।

ଛାନ୍ଦର ରଚନାରେ ସଙ୍ଗୀତମୟତା ଏତେ ରୁଚିକର ଯେ ଏବେ ମଧ୍ୟ ଗାୟକ, ପାଲାକାର ଓ ବିଭିନ୍ନ ଶାସ୍ତ୍ରୀୟ ନୃତ୍ୟ, ଲୋକ ନୃତ୍ୟ ଓ ଲୋକଗୀତରେ ବୈଦେହୀଶ ବିଳାସର ବହୁଳ ପ୍ରୟୋଗ ହେଉଛି । ରାମ ଚରିତ ବର୍ଣ୍ଣନାରେ ଓଡିଆ କାବ୍ୟ ଜଗତରେ ରସଗ୍ରାହୀ ବିଜ୍ଞ ଓଡିଆ ପାଠକ ସମାଜ ନିକଟରେ କାଳେ କାଳେ ବୈଦେହୀଶ ବିଳାସ ଜାଜ୍ୱଲ୍ୟମାନ ହୋଇ ରହିଥିବ ।

## ଲାବଣ୍ୟବତୀ

ଏହା ଉପେନ୍ଦ୍ର ଭଞ୍ଜଙ୍କ ଅନ୍ୟତମ ଶ୍ରେଷ୍ଠ କୃତି । ଏହା ଏକ କାଳ୍ପନିକ ନାୟକ ଓ ନାୟିକାଙ୍କ ଅତୁଳୀୟ ବର୍ଣ୍ଣନାର ଅନବଦ୍ୟ ସୃଷ୍ଟି । ଏହି କାବ୍ୟରେ କବିଙ୍କର ଭାବ ଗର୍ଭକତା, ରସ ପରିବେଷଣର ଶ୍ରେଷ୍ଠତା, ଅଳଙ୍କାର ମାନଙ୍କର ମଞ୍ଜୁଳ ପ୍ରୟୋଗତା ତଥା କଳ୍ପନା ବିଳାସର ଅପୂର୍ବ ଭଙ୍ଗୀର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ଓଡିଆ କାବ୍ୟ ଜଗତରେ ଚାଞ୍ଚଲ୍ୟ ସୃଷ୍ଟି କରିଛି । ଭାଷା ବିନ୍ୟାସ ଓ ଶବ୍ଦର ଅପୂର୍ବ ସମନ୍ୱୟରେ କବି ନିଜର ଅଲୌକିକ ପ୍ରତିଭାର ପରିଚୟ ଦେଇଛନ୍ତି । ରସାଳ ଛାନ୍ଦ ମାନଙ୍କର ସମାବେଶ, ପ୍ରାକୃତିକ ଶୋଭା ବର୍ଣ୍ଣନାରେ ସୌନ୍ଦର୍ଯ୍ୟ ବୋଧ, ରୀତି ଯୁଗର ସମସ୍ତ ଲକ୍ଷଣ ସହ ସାହିତ୍ୟ ତତ୍ତ୍ୱର ସକଳ ବିଧାନକୁ ଅନୁସରଣ କରି କବି ଏହି ଅନନ୍ୟ କାବ୍ୟ ସୃଷ୍ଟି କରି ନିଜର ମହାନୀୟତାକୁ ପ୍ରତିପାଦନ କରିଛନ୍ତି ।

ପାର୍ବତୀଙ୍କ ମାନସ ପୁତ୍ରୀ ବାଞ୍ଛାବତୀ ଅପୂର୍ବ ଲାବଣ୍ୟରେ ରସାଣିତ ହୋଇଛି । ଶିବ କାଳେ ତା ପ୍ରତି ଆକୃଷ୍ଟ ହେବେ ଭାବି, ଦେବୀ ମାନଙ୍କୁ ବେଷ୍ଟିତ କରି ଲୁକାୟିତ ରୂପେ ରଖିଛନ୍ତି ଓ ପୁରୁଷ ସ୍ପର୍ଶ ମାତ୍ରେ ଜୀବନ ଯିବାର ନିର୍ଦ୍ଦେଶ ଦେଇଛନ୍ତି । ଦିବ୍ୟ ଯୁବକ ପ୍ରଭାକର ମୋହିତ ହୋଇ ସ୍ପର୍ଶ କରନ୍ତେ ସେ କନ୍ୟାର ମୃତ୍ୟୁ ହୋଇଛି । ଦୈବୀ ବାଣୀ ହୋଇଛି ଗଙ୍ଗା ସାଗରେ ଝାସ ଦେଲେ ପର ଜନ୍ମରେ ସେ କନ୍ୟାକୁ ଲାଭ କରିବ । ପ୍ରଭାକର ଗଙ୍ଗା ସାଗରରେ ଝାସ ଦେଇ ପର ଜନ୍ମରେ କର୍ଣ୍ଣାଟ ଦେଶ ରାଜାଙ୍କ ପୁତ୍ର ରୂପେ ଜନ୍ମ ଲଭି 'ଚନ୍ଦ୍ରଭାନୁ' ନାମରେ ନାମିତ ହୋଇଛି । ସେ ଏହି କାବ୍ୟର ନାୟକ । ବାଞ୍ଛାବତୀକୁ ଦେବୀ ଏକ ରସାଳ ଫଳ କରିଛନ୍ତି ଓ ସିଂହଳ ରାଣୀ ଅମ୍ବିକାଙ୍କୁ ଉପାସନା କରି ସେ ଫଳ ପ୍ରାପ୍ତ ହୋଇଛନ୍ତି । ଏହି ଫଳକୁ ଭକ୍ଷଣ କରି ଏକ ଅପରୂପା ତନୟା ଲାଭ କରିଛନ୍ତି ଓ ତାହାର ନାମ 'ଲାବଣ୍ୟବତୀ' ତନୟା ହୋଇଛି । ସେ ଏହି କାବ୍ୟର ନାୟିକା । ଦୁହିଁଙ୍କ ବହୁ କଷ୍ଟରେ ମିଳନ ହୋଇଛି ଓ ପୁଣି ଚନ୍ଦ୍ରଭାନୁ ମହର୍ଷି ମାନଙ୍କୁ ରକ୍ଷା କରିବାକୁ ଯାଇ ବିଚ୍ଛେଦ ହୋଇ ପୁଣି ମିଳନ ହୋଇଛି । ଏହା ମିଳନ ବିଚ୍ଛେଦର କାଳ୍ପନିକ କାବ୍ୟ ଏବଂ ଏହାକୁ ସରସ ସୁନ୍ଦର କରିବା ପାଇଁ ବିଭିନ୍ନ ରସ ଓ ପ୍ରକୃତିର ପ୍ରୟୋଗ କବି ନିପୁଣତାର ସହ କରିଛନ୍ତି । କବି ନିଜ ଆରାଧ ପ୍ରଭୂ ରାମଚନ୍ଦ୍ରଙ୍କୁ ସ୍ମରଣ କରି କାବ୍ୟର ଆରମ୍ଭ କରିଛନ୍ତି । କିନ୍ତୁ ରାମ ଶବ୍ଦ କେବଳ ରାମଙ୍କୁ ନୁହେଁ ବରଂ ରାମ, ବଳରାମ, ପର୍ଶୁରାମଙ୍କୁ ବୁଝାଉଛି । କବିଙ୍କ ଭାଷାରେ –

"ଜୟ ଜୟ ଜୟ ରାମ ଜନଙ୍କ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ
ଚନ୍ଦ୍ର ହାସେ ଶୋଭାକର ସମସ୍ତକାଳର
ଲକ୍ଷଣବନ୍ତ ଅଲକ୍ଷ୍ୟ ମୁଖ ମନୋହର
କବି ଭାରତକି ଅଗୋଚର ଛବି ଯାର
ସୁମନା ବୃନ୍ଦ ବନ୍ଦନ ଏଣୁ ନିରନ୍ତର ।"

ଏହି କାବ୍ୟ କେଉଁ ପରି ରଚିତ ହେବାର କବିତାର କଳ୍ପନାର ପ୍ରାରମ୍ଭରୁ କରିଛନ୍ତି –

"ସେ ପ୍ରଭୂକଣ୍ଠ ଚରଣ କରି ତତପର
ଭଞ୍ଜ ବୀରବର ଜବି ମାନସ ଭ୍ରମର
ମୂର୍ତ୍ତିମନ୍ତ ପରି ମୃଦୁ ଗୀତ ବିଚାରଇ
ଏଣୁକରି ଥିବ ଅଳଙ୍କାର ଯୁକ୍ତ ହୋଇ
ପଦ ସରଳ ଧ୍ୱନୀରେ ମାନସ ମୋହିବ
ଅର୍ଥୀ ଜନ ପ୍ରବରଙ୍କୁ ଆନନ୍ଦ କରିବା ।"

ବାଞ୍ଛାବତୀକୁ ସୃଷ୍ଟି କରି ଦ୍ୱାର ଦେଶରେ ଶିବଙ୍କ ଡମ୍ବୁରୁ ନାଦ ଶୁଣି ପାର୍ବତୀ ଭାବିଛନ୍ତି -

"ହର ନେତ୍ର ଗତ ଯେବେ ହେବ ଶୁଭାଙ୍ଗୀ
ଯିବ ସିନା ମୋହର ସୁଭାଗୀ ପଣ ଭାଙ୍ଗୀ
ବିଷ ବୃକ୍ଷ ସ୍ଥାପି ନାଶ କରିବାର ଦୋଷ
ଏ ସଂସାର ଆମ୍ଭ ଖେଳ ଘରର ସଦୃଶ୍ୟ
କିଛି କାଳ ଅଗମ୍ୟ ଅରଣ୍ୟେ ଏହି ଥାଉ
ଜନ୍ମାନ୍ତେ ପୁରୁଷ ସଙ୍ଗ ବିଳାସକୁ ପାଉ ।"

ପ୍ରଭାକର ନାମକ ଦିବ୍ୟ ଯୁବକ ବାଞ୍ଛାବତୀ ଶୋଭାରେ ଆକୃଷ୍ଟ ହୋଇ ପ୍ରେମ ବିହ୍ୱଳିତରେ ଚାଟୁକ୍ତି ପ୍ରକାଶ କରିଛି ।

"ତପତ ତପନୀୟାଙ୍ଗୀ ତପ ଫଳ ମୋର
ଦୃହସିତେ ଇଷିତେ ସଫଳ କରି କର ।
ଅତିଦୀନ କ୍ଷୀଣ ହୀନ ମୁହିଁ ମଦନ ରଣରେ
ରକ୍ଷା ରକ୍ଷାକର କୁଟିଳାକ୍ଷୀ ଥରେ
ଏବଚନେ ସୀଉକାର କାଟାକ୍ଷେ ଆଣିଲା
ରସିକା ଭଜିଲା ଭାବ ରସିକ ଜାଣିଲା ।
ପୁରୁଷ ନିକଟ ଲଭିବାକୁ କୃଶକଟୀ
ଭାବବତୀ ମନେ କରି ଅଇଲା ପାଛୋଟ
ଚୁମ୍ବିବା ବେଳକୁ ମୁଖ ରାଜୀବ ତାହାର
ଜୀବ ହୀନ ହୋଇ ତା ରହିଲା କଳେବର ।"

କାଶି ବିଶ୍ୱନାଥଙ୍କୁ ଆରାଧନା କରି କର୍ଣ୍ଣାଟ ରାଜା ଶଶି ଶେଖର ପ୍ରଭାକରଙ୍କୁ ପୁତ୍ରରୂପେ ଲାଭ କରଛନ୍ତି । ତାହାର ନାମ ଚନ୍ଦ୍ରଭାନୁ ରଖିଛନ୍ତି । ଦେବାଦେବୀଙ୍କ ଆର୍ଶୀବାଦରେ ତାର ସୁଗୁଣ ସବୁ ବିକଶିତ ହୋଇଛି । କବିଙ୍କ ଲେଖନୀରେ -

"ବେଦ ବେଦାନ୍ତେ ବିଧାତା ବ୍ୟାକରଣେ ହର
ସଙ୍ଗୀତରେ ନାରଦ ଶୃଙ୍ଗାର ଶାସ୍ତ୍ରେ ମାର
କବିପଣେ ଗଣେଶ ଜ୍ୟୋତିଷେ ବୃହସ୍ପତି
ଅଶ୍ୱା ରୋହେ ମିହିର ଭୈରବ ପରା ଗତି
ଧନୁର୍ଦ୍ଧରେ ଅର୍ଜ୍ଜୁନ ଗଦାରେ ବୃକୋଦର
ଦାନୀରେ କର୍ଣ୍ଣ ମାନୀରେ କୁରୁ ଦଣ୍ଡଧର
ବଳିଷ୍ଠରେ ବାଳୀ ଧାର୍ମିକରେ ଯୁଧିଷ୍ଠିର
ସୁନ୍ଦର ପଣରେ ତାକୁ ସେହି ପଟାନ୍ତର ।"

କର୍ଣ୍ଣାଟ ରାଜାଙ୍କ ମନ୍ତ୍ରୀ, ଜ୍ୟୋତିଷ, ସାଧବ, ପୁରୋଧାଙ୍କ ପୁତ୍ରଗଣ ଯଥା ଗୁଣନିଧି, ବସନ୍ତକ, ପୁରନ୍ଦର, ରତ୍ନଧ୍ୱଜ ଏ ମାନେ ଚନ୍ଦ୍ରଭାନୁର ବାଲ୍ୟ ସଙ୍ଗୀ । ଉଚିତ ଆଦର୍ଶ ଓ ସଂସ୍କାରରେ ପିଲାଦିନୁ ପରିଚାଳିତ ହୋଇଥିବା ଯୋଗୁଁ ଓ ଈଶ୍ୱର କୃପାରୁ ଚନ୍ଦ୍ରଭାନୁ ଦୈବ ଗୁଣ ସମ୍ପନ୍ନ ବ୍ୟକ୍ତିତ୍ୱ ଲାଭ କରିଛି । ସିଂହଳ ରାଜା ରତ୍ନେଶ୍ୱର ଓ ପାଟରାଣୀ ବିଦ୍ୟୁଲତାଙ୍କ ଔରଷରୁ ୫ଟି ପୁତ୍ର ଜନ୍ମ ହେବା ପରେ ଅମ୍ବିକାଙ୍କୁ ଆରାଧନା କରି ରସାଳ ଫଳ ଲାଭକରିଛନ୍ତି । ତାହ ଦ୍ୱାରା ଉତ୍ତମ ଲଗ୍ନରେ ଲାବଣ୍ୟବତୀର ଆବିର୍ଭାବ ହୋଇଛି । ଶିଶୁ କନ୍ୟା ଲାବଣ୍ୟବତୀର ରୂପ ବର୍ଣ୍ଣନାରେ କବିଙ୍କ ଲେଖନୀରୁ ଝରି ପଡିଛି -

"ମୁଖ ହେବ ଏମନ୍ତ ବିଚାରି ପଦ୍ମ ବିଧୁ
ହସ୍ତାବଳୀ କରି ଆଗୁଁ ଗଢିଗଲା ସାଧୁ
ତହୁଁ ବାସ, ଆହ୍ଲାଦ, ଦର୍ପଣରୁ ଝଳି
ଲହରୀରୁ କୁଟିଳ ଅଞ୍ଜନ ପୁଞ୍ଜକାଳୀ ।
କୁରଙ୍ଗରୁ ତରଙ୍ଗ ବିଦ୍ରୁମ ରଙ୍ଗ ହରି,

ଲବଣୀ ଶିରିଷରୁ କୋମଳ ଗୁଣ ତୋଳି ।
ସୁବର୍ଣ୍ଣରୁ ବର୍ଣ୍ଣ ଗତିହଂସଠାରୁ ଗତି
ଏରୂପେ ଉପମା ବର୍ଗ ଯେତକ ଅଛନ୍ତି,
ବିହି ସବୁଠାଗୁ ସାର ସାର ଭାବଆଣି
ପୁରଟ ପ୍ରତିମା ପ୍ରାୟେ ରଚିଲା ରମଣୀ ।”

କ୍ରମେ ଲାବଣ୍ୟବତୀଠାରେ ଯୌବନ ସଞ୍ଚାର ହୋଇଛି ତାର ଅପରୂପ ସୌନ୍ଦର୍ଯ୍ୟ ବିକାଶ ଲାଭ କରିଛି । ଏହାକୁ କବି ତାଙ୍କ ମନୋଜ୍ଞ ମନୋହର ଭାଷାରେ, ସରସ ରସାଳ ପଦାବଳୀରେ ମଧୁର ଓ ସୁନ୍ଦର ଅଳଙ୍କାରରେ ଅଳଙ୍କରଣ କରି ସୁସଜ୍ଜିତ ଛାନ୍ଦ ବିନ୍ୟାସରେ ନିଜର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

ଝଳି କାନ୍ତିକି ଲଭିଣ ଭିତିକ,
କଲା କଣ୍ଟକ ଦୁର୍ଗକୁ କେତକୀ ।
ପାଞ୍ଚେ ମନ୍ଦର କୁଚ ବଢ଼ିବାରେ
କିମ୍ପା ବୁଡ଼ି ନ ମଲି ପାରାବାରେ
କମ୍ବୁକଣ୍ଠ ଦେଖି ଅତି ଆର୍ତ୍ତରୁ,
ସମନୁହେ ବୋଲି ଡାକେ ପ୍ରାତରୁ ।

ସରୋବର ସଖିମାନଙ୍କ ସହ ଲାବଣ୍ୟବତୀର ସ୍ନାନ ବର୍ଣ୍ଣନାକୁ କବିଙ୍କ ରସାଳ ପଦାବଳୀରେ ଜୀବନ୍ତ ହୋଇଛି । ସରୋବର ବର୍ଣ୍ଣନାରେ

“ସରସୀ ଶୋଭିତ ଅନାଇ ମନ ନେତ୍ର ଲୋଭିତ
ତଟ ଘଟଣ ବିଦ୍ରୁମରେ ପକ୍ଷୀ ପତିବିମ୍ବିତ ।
କିନୀଳ ଶାଢ଼ି ହଂସାବଳୀ ରଙ୍ଗଧଡ଼ି ହୋଇଛି
ଅବନି ବନିତା ବିସ୍ତାର କିମ୍ପା କିଣିମାଇଛି
ଗଭିର ଗୁଣକୁ ପଣ୍ଡିତଠାରୁ ଗ୍ରହିତ କରି
ନର୍ତ୍ତକି ଠାବରୁ ଭଉଁରୀ ଶିକ୍ଷା ପରା ଏହାରି ।”

ସ୍ନାନରତା ଲାବଣ୍ୟବତୀ ରୂପ ବର୍ଣ୍ଣନାରେ କବି ତାଙ୍କର ମନୋମୁଗ୍ଧକର ଅଳଙ୍କାର

ପ୍ରୟୋଗରେ ରସାଳ କରିଛନ୍ତି । ସେଥିରୁ ଗୋଟିଏ ପଦ -

"ଅପୂର୍ବ ଅମ୍ବୁଜ ମୁଖ ଚାହିଁ ଭୃଙ୍ଗ ଚକୋର
ଚୁମ୍ବିବା ଲୋଭରେ ଧାଇଁଲେ ଶୃତି ଦେଖିକାତର ।"

ସରସୀର ପ୍ରକୃତି ବର୍ଣ୍ଣନାରେ କବି ବିମୋହିତ କରି ତାଙ୍କର ଯମକ ପ୍ରୟୋଗରେ ସିଦ୍ଧତା ଦେଖାଇଛନ୍ତି ।

"ଦେଖରେ ନଳିନୀ ନଳିନୀ ନଳିନୀରେ ପୁରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଏ ଶୋଭିତ ।
ବିରାଜୀ ବିରାଜୀ ଅଛନ୍ତି ମୀନ ଭକ୍ଷଣ ପାଇଁ
ରାଜୀବ ରାଜୀବ ନୟନା ଏଥି ଖେଳା କରଇ ।"

ସ୍ନାନ ଅବଶେଷେ ନବ ଯୁବାତିଗଣଙ୍କର ଆହୁରି ଚମତ୍କାର ସୌନ୍ଦର୍ଯ୍ୟ ପ୍ରକାଶ କରିଥାନ୍ତି । ଏହି ବର୍ଣ୍ଣନାକୁ କବି ସମ୍ରାଟ ତାଙ୍କ ମନୋଜ୍ଞ ଚିତ୍ରଣରେ ଅଳଙ୍କାର ଯୁକ୍ତ କରି ରସାଣିତ କରିଛନ୍ତି ।

"ସ୍ନାନ ଅବଶେଷେ କୂଳକୁ କୂଳ ପାଳିକା ଆସି
ଗଉର ଗଉର ଅଙ୍ଗରେ ଶାଢ଼ି ଏମନ୍ତ ଦିଶି ।
ସ୍ଫଟିକ ବାଡ ଫୁଟିକି ଦିଶେ ହେମ ପିତୁଳା
ସ୍ତନ ସଂପୁଟେ କି ବାରଣ ଦନ୍ତ ପିଧାନ କଲା ।
ଅତିଜର ଜର ନୀରରେ ଯହୁଁ ଏମନ୍ତ ଭାବି
କି ଚନ୍ଦ୍ରଶିଳା ଶୈଇଳ ହାସଚନ୍ଦ୍ରରେ ଦ୍ରବି ।"

ସିଂହଳ ରାଜା ସନ୍ୟାସୀ ଜ୍ଞାନାନନ୍ଦଙ୍କ ଦ୍ୱାରା ଲାବଣ୍ୟବତୀ ଚିତ୍ରପଟ୍ଟ ଦେଇ ବିଭୀନ୍ନ ଦେଶର ରାଜ କୁମାରଙ୍କୁ ଦେଖାଇ ଉପଯୁକ୍ତ ବରପାତ୍ର ପାତ୍ର ସନ୍ଧାନ ପାଇଁ ସନ୍ନ୍ୟାସୀଙ୍କୁ ଅନୁରୋଧ କରିଛନ୍ତି । ଏହି ଛାନ୍ଦରେ ଭାରତର ବିଭିନ୍ନ ଅଞ୍ଚଳକୁ ମଞ୍ଜୁଳ ରୂପେ ସ୍ଥାନିତ କରିଛନ୍ତି । ସେଥିରୁ ପଦୁଟିଏ -

"ସିନ୍ଧୁରେ ଭାଷିଲେ ସିନ୍ଧୁରେ ଯେ ଝାସିକ
ସିନ୍ଧୁର ଗମନା ପ୍ରତି ଅଙ୍ଗେ ମିଶିବ ।"

ସନ୍ନ୍ୟାସୀଙ୍କ ଠାରୁ ଚନ୍ଦ୍ରଭାନୁ ଲାବଣ୍ୟବତୀର ପଟ୍ଟଚିତ୍ର ଦେଖି ଭାବ ବିହ୍ୱଳିତ ହୋଇଛି । ପାଦଠାରୁ ଶିଖା ପର୍ଯ୍ୟନ୍ତ ୩୬ ପାଦରେ ଲାବଣ୍ୟବତୀର ବାହ୍ୟ ରୂପ ବର୍ଣ୍ଣନାରେ କବି ତାଙ୍କର ଲେଖନୀ ଚାଳନା କରିଛନ୍ତି । ଉଦାହରଣ ସ୍ୱରୂପ ଚକ୍ଷୁ ବର୍ଣ୍ଣନାରେ -

"ଅତି ବିଚିତ୍ର ଛୁରିକା ନୟନ
ଅଞ୍ଜନ ଲାଞ୍ଛୁ ବ୍ୟାଜେ ମହାମୁନ ।
ନମାରୁ ଚାହାଁଣି ଛଟକ କରି
ମରମକୁ ଭେଦି ଯାଏ ବାହାରୀ ।"

ସନ୍ନ୍ୟାସୀ ଯାଇ ସିଂହଳ ରାଜଙ୍କୁ ଲାବଣ୍ୟବତୀର ଉପଯୁକ୍ତ ବର ଚନ୍ଦ୍ରଭାନୁ ବୋଲି ସୂଚନା ଦେଇଛନ୍ତି । ସିଂହଳ ରାଜା ଚନ୍ଦ୍ରଭାନୁଙ୍କୁ ଆଣିବା ପାଇଁ ବ୍ୟବସ୍ଥା କରିଛନ୍ତି । ଏକାଦଶ ଛାନ୍ଦରେ ଈଶ୍ୱର ପାର୍ବତୀଙ୍କ ଦୟାରୁ ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ ଏକ ଯୋଜନା ଦ୍ୱାରା  ମାୟାବଳରେ ମିଳନ ହୋଇ ବିଚ୍ଛେଦ ହୋଇଛି । କବି ଏଠାରେ ତାଙ୍କର କଳ୍ପନା ବିଳାସ ସହ ସମସ୍ତ ଭଙ୍ଗୀୟ ଶୈଳୀର ପ୍ରୟୋଗ କରିଛନ୍ତି । ଏହି ଛାନ୍ଦ ସଂଧ୍ୟା ବର୍ଣ୍ଣନାରୁ ଆରମ୍ଭ କରିଛନ୍ତି ।

"ଏଥୁ ଅନ୍ତେ ଶୁଣରସ        ଗ୍ରୀଷମେ ନିଶି ପ୍ରବେଶ
ଉଦୟ ତାର ଜୀବେଶ ହେଲେ ଆକାଶେ
ଚକ୍ର ସୁଖ ଚକ୍ର ନକ୍ର        ଛେଦନେ ହୀରକ ଚକ୍ର
ପିଙ୍ଗିଛି ତାତସିନ୍ଧିରେ କମକି ରୋଷେ
ବେଶ ହେବ କି ରାତ୍ର ବାଳୀ
ସ୍ଫଟିକ ପେଟିରେ କିମ୍ବା କସ୍ତୁରୀ ଦଳି ।
ଆଜିକି ବିଭାବରୀକି        ହୋଇବ ବିଭାବରିକି
ମଲ୍ଲିମାଳା ଦେଇମଧୁ କିରଣ ମଣି ।
ଏବିଚିତ୍ର ସୟମ୍ବର        ନାରୀକି ବରିଲା ବର
ଏତେ କାଳେ ଦେଖାଗଲା ଏକଥା ପୁଣି
ରବି କରେ ମହି ମହିଳା ।
ତାପି ହୋଇଥିଲାକି ଚନ୍ଦନ ଲେପିଲା ।"

ସନ୍ନ୍ୟାସୀ ଠାରୁ ଚିତ୍ରପଟ୍ଟ ଦେଖି ଚନ୍ଦ୍ରଭାନୁ କାମଜ୍ୱାଳାରେ ତାପିତ ହୋଇ ଶିବଙ୍କୁ ଲାବଣ୍ୟବତୀର ଦର୍ଶନ ଲାଭ ପାଇଁ ପ୍ରାର୍ଥନା କରିଛି ।

"ଯେମନ୍ତେ ଦେଖିଛି ଚିତ୍ର ତେମନ୍ତ ଦିଶଇ ନେତ୍ରେ
କେମନ୍ତ ଲଭିବ ମୂଳ ବିଚାର ଏହି
ଯେବେ ଏ ଯୁବା ବୟସେ ଦିବ୍ୟ ରାମାନାହିଁ ପାଶେ
କି ଲାଭ ତହୁଁ ନୃପତି ସଂପତି ଥାଇ
ଆରତେ ସେ ଚିନ୍ତିଲା ଶିବ ।
ତାକୁ ଦେଖାଇ ନ ହେଲେ ଯାଉ ଏ ଜୀବ ।"

ତେଣେ ଲାବଣ୍ୟବତୀ ମଧ ତାର ମନକୁ ଲାଘବ କରିବା ପାଇଁ ଦୁର୍ଗାଙ୍କୁ ପ୍ରାର୍ଥନା କରିଛି । ଫଳରେ ହର-ପାର୍ବତୀଙ୍କ ଦୟାରୁ ଦୁହିଁଙ୍କର ମିଳନ ହୋଇଛି ।

"ଦୁର୍ଗା ମୋ ଦୁର୍ଗତି ହର    ଏମନ୍ତ ବ୍ୟାକୁଳତାର
ହର ଉମା ଦୟାକଲେ ସେ ନାରୀ ଫୁସେ
ନିଦ୍ରାବଶରେ ସପନ    ଦେଖିଲେ ସତସପନ
ଏକ ଯୋଗିନୀ ପ୍ରବେଶ କୁମାର ପାଶ
କରଧରି ନିଦ୍ରା ଭାଙ୍ଗିଲା ।
ଗଗନ ମାର୍ଗେ କୁମାରୀ ପୁରକୁ ନେଲା ।"

ଚନ୍ଦ୍ରଭାନୁ ନାୟିକା ଲାବଣ୍ୟବତୀର ଶୋଭାକୁ ଦେଖି ମୁଗ୍ଧ ହୋଇ ବିଚାର କରିଛି । କବିଙ୍କ ଭାଷାରେ -

"ଅଣି ମାଜି ସୁଖଦାୟୀ    ଶୋଇଅଛି ଅଣିଆଇଁ
ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା
ରସାଣ ରଜତବାଡେ    କନକ ଲତା କି ଜଡେ
ବିଶଦ ଘନରେ କିସେ ଚପଳ ପ୍ରଭା ।
ବାମକରେ କପୋଳ ତଳ
କେନ୍ଦୁପଲ୍ଲବେ ଥୁଆକି ଫୁଲ କମଳ ।
ଦନ୍ତ ଉଦଧିମନ୍ଥନ    ଅଚଳ ସ୍ତନ ଚନ୍ଦନ

ଲେପନ ହୋଇ ଶୋଭନ ବସନଗଳି ।
ସୁଧା କୋଷ ବେନି ଆଣି    ତାଙ୍କକି କାଚ ଢାଙ୍କୁଣି
ଭାଳିଦାୟିତ ଭୋଗକୁ ରଖିଛି ବାଳୀ ।
ସ୍ଫୁଟିକ ପ୍ରସାଦ ସଦୃଶୀ
ନବଘନ କାନ୍ତି ଅଛି ତହିଁରେ ମିଶି ।"
"ଭଜୁ ନ ଭଜୁ ବାନ୍ଧବୀ    ଆଗ ମୁଁ ନିଦ୍ରା ଭାଙ୍ଗିବି"

ଏହି ବିଚାରରେ ଚନ୍ଦ୍ରଭାନୁ ଲାବଣ୍ୟବତୀର ଜାନୁକୁ ଧରି ହଲାଇ ଦେବାରୁ ନିଦ୍ରା ଭାଙ୍ଗି ଯାଇଛି । କବିଙ୍କ ଭାଷାରେ -

"ଉଠି ଭାଙ୍ଗନ୍ତେ ଅଳସ    କି ଶୋଭା କୁଚକଳସ
ଟେକି ହୁଏ କି ମେରୁକୁ ଜିଣିବା ଗର୍ବେ
ଉର୍ଦ୍ଧେ ଛନ୍ଦ କରବେନି ଶୋଭା ଲପନକୁ ଘେନି
ଚନ୍ଦ୍ରକି ବିଦ୍ୟୁ ପରନ୍ଦିହୋଇଲା ଏବେ
ମୁଖ ଜୁମ୍ଭାବଣେ ରାଜିତ ।
ଦର ବିକଶିତ କୋକନଦ ଯେମନ୍ତ ।"

ସୁନ୍ଦର-ରୂପକ ପାରବାରର ମୂର୍ତ୍ତିମନ୍ତ ହୋଇ ବିରାଜମାନ କରିଥିବା ଚନ୍ଦ୍ରଭାନୁ ଦେଖି ଲାବଣ୍ୟବତୀ ବିଚାର କରିଛି -

"ଭାଳୁଛି ନୁହଇ ମାର    ନାହିଁ ଧନୁ ଫୁଲଶର
ସୁଧାକର ନୁହେ ତହିଁ କଳଙ୍କ ଅଛି ।
ଆଉ ଦେବତା ମାନଙ୍କୁ କିମ୍ପା ଆଣିବା ମନକୁ
ମୋହର ସୁକୃତୁ ଏ ପୁରୁଷ ହୋଇଛି
ମୋର ପୁଣି ସୁକୃତ କେତେ
ଏମନ୍ତ ଶୋଭା ହେବାରୁ ଜାତ ଜଗତେ ।

ଏହାପରେ ଚନ୍ଦ୍ରଭାନୁ କାବ୍ୟ ଅନୁରୂପ ଚାଟୁ ବଚନରେ ନାୟିକା ମନକୁ ଆକୃଷ୍ଟ କରିବାକୁ ଚେଷ୍ଟିତ ହୋଇଛି । କବି ତାଙ୍କର ଅମର ଲେଖନୀରେ ଏହି ଭାବକୁ ସରସ ସୁନ୍ଦର କରି ବର୍ଣ୍ଣନା କରିବାରେ ସଫଳ ହୋଇଛନ୍ତି ।

"ଏ କାଳେ କର କୋରକ    କରି ତରୁଣ ତିଳିକ
ବୋଇଲାରେ ଜୀବେଶ୍ୱରୀ ବିନୟ ଘେନ
ଚରଣ ଅଳତା ପରି    ପଛେ ପଛେ ଛାଇପରି
ଅନୁସରି ଥିବାକୁ ମୋ ହେଉଛି ମନ
ମୋତେ ଦିଅ ବସନ ଭାଗ୍ୟ
ହେଲନି ମୁଁ ସବୁ ମତେ କୃତାର୍ଥ ଯୋଗ୍ୟ ।
ଯେବେ ମୋର ଭାଗ୍ୟ ନାହିଁ    ତତେ କି ପାରନ୍ତି ଚାହିଁ
ବିଶେଷତ ତନୁ ଛୁଇଁ ଏକଥା ଭାବ
ମୋ ମତ ମୁଁ ତୋ ସେବକ    ହେଲିଣି କାମ ପାବକ
ଜାଳିଲେ ଏ ଅଯଶ କାହାକୁ ହେବ
ବିନୟ ପ୍ରଶଂସାକୁ ବାଣୀ,
ନାହିଁ ମୁଁ କି କରିବି ଦୟାଳୁ ମଣି ।
ମିଥାନୋହେ ନିଦ୍ରା ବ୍ୟାଜେ    ନେତ୍ର ଯମଦାଢକୁ ଯେ
ରଖିଥିଲୁ ପକ୍ଷ୍ମ କୋଷୁ କରି ବାହାର
ହୃଦରେ ମାରି ଓଟାରୀ    ଘେନିଗଲୁ ଝଟ କରି
ଦେଖ ମୁକୁରେ ରୁଧିର ହୁଏ ଜର୍ଜର
ହାସ ଔଷଧିଶ ପ୍ରକାଶ,
ନକଲେ ନବିନା ଗଲି ସିନା ମୁଁ ନାଶ ।"

ତାପରେ ଲାବଣ୍ୟବତୀର ଚନ୍ଦ୍ରଭାନୁ ସ୍ୱୀକାର, ନାୟକର ମୁଦ୍ରିକା ପ୍ରଦାନ, ନାୟିକା ନାୟକ କଣ୍ଠରେ ମୋତି ମାଳା ଦେଇ ବରଣ କରିବାର ଚିତ୍ରକୁ କବି ତାଙ୍କ ମନୋଜ୍ଞ ଚିତ୍ରଣରେ ଚିତ୍ରିତ କରିଛନ୍ତି ।

"ସେ ରମଣୀ ଚନ୍ଦ୍ରମଣି    ହୋଇଲା ଏମନ୍ତ ମଣି
ଚାଟୁ ଚନ୍ଦ୍ରେ ଦ୍ରବିଭୂତ କଲା ନାଗର
ହାସ ପରିଲା ପରାୟେ    ଶ୍ରୀମୁଖ ପ୍ରସନ୍ନ ହୁଏ
ହେଲା ଜାଣି ବକ୍ର ନେତ୍ରେ ତା ସିଉକାର

କରଧରି ଶିରେ ଲଗାଇ
କୋଳକରି ସୁରସିକ ପଲ୍ୟଙ୍କେ ନେଇ ।
ବସି ବସାଇଲା କୋଳେ ଲପନ ଚିମ୍ବିବା ବେଳେ
ଜେମା କରେ ଦେଲା ବେଗେ ରତନ ମୁଦି
ଜେମା କାଢି ମୋତି ମାଳା ଲମ୍ବାଇଲା ପୁଂସଗଳା
ପରସ୍ପରେ ବରଣେ ହୋଇଲେ ପ୍ରମୋଦି
ସେ କାଳକୁ ଅସ୍ତ ଚନ୍ଦ୍ରମା
କୁମାର ସ୍ୱରୂପ ବାଢେ ଲେଖି ପ୍ରତିମା ।"

ଦୈବୀମାୟାରେ ନାୟକ ନାୟିକା ପରସ୍ପର ଠାରୁ ବିଚ୍ଛିନ୍ନ ହୋଇଛନ୍ତି । ଦ୍ୱାଦଶ ଛାନ୍ଦରେ କବି ଲାବଣ୍ୟବତୀର ବିରହ ବର୍ଣ୍ଣନାରେ ସିଦ୍ଧହସ୍ତ ହୋଇଛନ୍ତି । ସଂସ୍କୃତ ଆଳଙ୍କାରିକ ମତରେ -

"ନ ବିନା ବିପ୍ରଲମ୍ଭେ ନ ସମ୍ଭୋଗ ପୃଷ୍ଟମଶ୍ନୁତେ ॥"

ବିରହବିନା ସମ୍ଭୋଗର ପୂର୍ଣ୍ଣତା ନାହିଁ । ବିରହ କୁରଣରେ ମଧୁରତା ଭରିଦିଏ । ବିରହି ନିଜ ପ୍ରେମି ପାଇଁ ଆକୁଳଚିତ୍ତରେ ମନୋ ନିବେଶକରି ଏକ ବ୍ରତି ପରି କେବଳ ପ୍ରେମରେ ମଜି ରହେ । ଏହି ଛାନ୍ଦରେ ସରସତା କୁ ନଜେ କବି ଶେଷ ପାଦରେ ବର୍ଣ୍ଣନା କରିଛନ୍ତି ।

"ହେ ରାମ କାମ ସୁନ୍ଦର ଗୁଣବନ୍ତ ଶୀଳମୁଖ ଧନୁଧାରଣ
ସୀତାମୂଜ ମୁଖି ପ୍ରତି ପ୍ରମୋଦିତ ହରି ମିତ୍ର ପଣ ପ୍ରମାଣ
ଜାଣି, ବିରହ ବିପତ୍ତି ହର ତତ୍ ପର
କହେ ଉପଇନ୍ଦ୍ର ଭଞ୍ଜ ବୀରବବର ଏ ଛାନ୍ଦ ଅତି ମନୋହର ।"

ନିଦ୍ରାରୁ ଉଠି ଚନ୍ଦ୍ରଭାନୁଙ୍କୁ ନ ଦେଖି ଲାବଣ୍ୟବତୀ ନିଶାନ୍ତ ସମୟରେ ବିରହରେ ବିଳପି ଉଠିଛି ।

"ଚେତି ଚାତୁରୀ ଚାହିଁଲା ନିଶି ନାଶେ ପାଶେ ନାହିଁ ଦିବ୍ୟ ତରୁଣ
ମାରି ହୃଦେ ହାତ ନାଥ ନାଥ ବୋଲି ଅତି ଉଚ୍ଚେ କଲା କାରୁଣ୍ୟ

ଖୋଜେ ଅଧିରେ ଚେତନା ହତ ସେ ବିଧିରେ,
ଶେଯ ଲେଉଟାଇ କବରୀ ଫିଟାଇ କର ଭରି କୁଚ ସନ୍ଧିରେ ।
ପୁଣି ବୋଲଇ ହେ ଜାଣି ମୁଁ ନଥିଲି ଦଇବ ତୁ ଏତେ ଦାରୁଣ
କ୍ଷୁଧାତୁରକୁ ସୁଧା ତୁଲ୍ୟ ଭୋଜନ ପରଶିଲୁ କେଉଁ କାରଣ
ଭୁଞ୍ଜି ବସିବା ବେଳେ କୁଳିଶ ବୃଷ୍ଟି କଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏତେ ଆକୁଳ କିମ୍ପା କଲୁ ।

ସଖିଗଣ ଶଯ୍ୟା ତ୍ୟାଗ କରି ଚମକିତ ହୋଇ ପଚାରିଛନ୍ତି, ଦିବାକର ଅଗମ୍ୟ ପୁରକୁ ପୁରୁଷ ପଦ କୁଆଡେ ଆସିଲା । କିନ୍ତୁ ପରେ ଲାବଣ୍ୟବତୀର ବିଳାପର ସତ୍ୟତା ପ୍ରମାଣିତ ହୋଇଛି । କବିଙ୍କର ରଚନାରେ –

"ଗଣ୍ଡ ମଣ୍ଡଳ ପାଟଳ ଚୁମ୍ବିବାରେ ତାମ୍ବୁଳ ବୋଳତ ଲାଗିଛି
ପାନବଶରେ ରଦ ବାସ ବିଶେଷ ଶୋଭା ଦନ୍ତକ୍ଷତ ହୋଇଛି
ଚନ୍ଦ୍ର ବଦନ ଠାବେ ଠାବେ ଅଙ୍ଗ ଜଡିଛି
କାମ କାତରେ ଉଡିଛି ତର ତରେ କଙ୍କଣ ପଦରେ ପଡିଛି
ଛୁଇଁ ବା ବେଳରେ ଶ୍ରୀ ଅଙ୍ଗ ଜେମାର ଦେଇଥିବ ସିନା ଆଦର
ଯେଉଁ ମୁଦ୍ରିକା ଅନାମିକା ମଣ୍ଡନ କେହି ଦେଖିଛକି ଏପୁର
ଯହୁଁ ଦେଖାଇ ଏ ରୂପ ସଙ୍କେତ ନିକର
ଏକାଳେ ଜଣେ ଚାହିଁ ବୋଲି ବାଡକୁ ସେପରା ଏଚିତ୍ର ସୁନ୍ଦର ।
ସେବାଡ ଚିତ୍ରକୁ ଦେଖି ସଖିମାନେ ମୋହିତ ହୋଇ କହିଛନ୍ତି –
ଉପମା ସୃଷ୍ଟି ସୃଷ୍ଟି କରି ବିମୋଷ୍ଟି ଦୁର୍ଲ୍ଲଭ ବଲ୍ଲଭ ରୂପକୁ
ଦେଖି ଭାବିଲେ ପରମେଷ୍ଟି ଗୋଟିଏ କଲା କୋଟିଏ କନ୍ଦର୍ପକୁ
ସର୍ବ ସଜନୀ, ଅନିମିଷ ହୋଇ ରହିଲେ
ନୋହିଲେ କାହିଁ କି ଜଗତ ମୋହିନ ମନକୁ ମୋହିଲା କହିଲେ ।"

ଚନ୍ଦ୍ରଭାନୁ ବିରହରେ ଲାବଣ୍ୟବତୀ ଅତ୍ୟନ୍ତ ବ୍ୟାକୁଳତ ହୋଇ କାମ ଜ୍ୱର ପୀଡିତ ହୋଇଛି । ବହୁ ଚିକିତ୍ସା ପରେ ମଧ ଅବସ୍ଥା ସୁଧୁରି ନାହିଁ । ଏହାକୁ ଲକ୍ଷ୍ୟ କରି ଏକ ବୟସ୍କା ଦାସୀ କହିଛି –

"ଶୁଣି ସେ ଯାଇ ଦେଖିଲା ରମଣି ରତନ
ଜରତା ମୃଦୁସୁଲି ଆଗେ କହିଲା ଏ ଜ୍ୱରକୁ ଏହି ବିଧାନ
ରସବିନା ଏ ନ ଘୁଞ୍ଚିବ ରୁଚିର ମଧୁର ଆହର ହୋଇଲେ
ଶାନ୍ତ ହେବ ଚିନ୍ତା ତାପରାତ୍ରେ ଚନ୍ଦ୍ରଭାନୁରେ ଏକ ଶଯ୍ୟାକଲେ
ରୋଗ ବିଷମ ରାଜ ଜନ୍ୟ ହୋଇ ହୋଇଛି
ପୁଟ ପାକରେ ଯେତକ ଓ୍ୱଷଧି ଏ ଗୁଣ ନକରିବ କିଛି ।"

କାବ୍ୟ ଯୁଗରେ ଗୌଣ ଚରିତ୍ରର ଚିତ୍ରଣ କ୍ୱଚିତ ଦେଖିବାକୁ ମିଳେ । ମୁଖ୍ୟ ପାତ୍ର ପାତ୍ରୀଙ୍କ ସହ ଯୋଗୀ ରୂପେ କିନ୍ତୁ ଏହି ଗୌଣ ଚରିତ୍ରରୁ ସେ ସମୟର ସାମାଜିକ ଚଳଣି, ରୀତିନୀତି, ଚାଲିଚଳଣ ଓ ବେଶ ଭୂଷାର ସୂଚନା ମିଳିଥାଏ । ଉପେନ୍ଦ୍ରଭଞ୍ଜ ସେହିପରି ନଟ, ନଟୀ, ସନ୍ୟାସୀ, ସନ୍ୟାସିନୀ, ସଖି, ସଙ୍ଗୀତ, ମୃଦୁସୁଲି, ମାଲ୍ୟାଣି, ନାପିତୁଣି ଇତ୍ୟାଦିର ବର୍ଣ୍ଣନା କରିଛନ୍ତି । ତ୍ରୟୋଦଶ ଛନ୍ଦରେ ସେହିପରି ମାଲ୍ୟାଣିର ବର୍ଣ୍ଣନା ରହିଛି । ମାଲ୍ୟାଣୀକୁ ବେଶ ଭୂଷାରେ ସଜାଇ ଶୃଙ୍ଗାର ରସସିକ୍ତ କରି କବି ଛାନ୍ଦଟିକୁ ସର୍ବାଙ୍ଗ ସୁନ୍ଦର କରିଛନ୍ତି ।

"ଲଲାଟେ ଚନ୍ଦନ ଚିତା ସିନ୍ଦୁର ବିନ୍ଦୁ ଶୋଭିତା
ଚନ୍ଦ୍ର କୋଳେ କି ସବିତା ଏହି ଭଙ୍ଗିତା ଏ ।
ଉଚ ଘଞ୍ଚ କୁଚ ବେନି ହେଲା ଦିନୁ ଯଉବନୀ
ଦେଖିତ ନାହିଁ ଅବନୀ ଲୋଚନ ବେନି ଏ ।
ମାରିବାକୁ ଯୁବା କୁଳ, କାମ କରି ଅନୁକୂଳ
ଟେକିଛି ଶାଢି ଘେରକି ତଥା ସୁନ୍ଦର ଏ ।

ମାଲ୍ୟାଣୀ ଚନ୍ଦ୍ରଭାନୁର ସୂଚନା ଦେଇଛି । ଏହା ସେ ସ୍ୱପ୍ନରେ ଶିବଙ୍କଠାରୁ ପାଇଥିଲା । ଏହା ଶୁଣି ଲାବଣ୍ୟବତୀର ବିରହ ବେଦନାରେ ଉପସମ ଆସିଛି । ନାୟକର ବିରହକୁ କବି ୧୪ଶ ଛାନ୍ଦରେ ବର୍ଣ୍ଣନା କରିଛନ୍ତି । ଚନ୍ଦ୍ରଭାନୁ ବିଳାପ ଶୁଣି ତାଙ୍କ ସଖାମାନେ ସାନ୍ତ୍ୱନା ଦେଇଛନ୍ତି । କିଛି ନଥିବା ଠାରେ ମଧ୍ୟ ସବୁକିଛି ସମ୍ଭବ ହେଉଛି  କିନ୍ତୁ  ଚନ୍ଦ୍ରଭାନୁ ଗଳାରେ ନାୟିକା ପ୍ରଦତ୍ତ ମୋତିହାର ଅଛି

ତେଣୁ ଏ ବ ନିଶ୍ଚୟ ବାସ୍ତବ ରୂପ ନେବ ବୋଲି ଆଶ୍ୱାସନା ଦେଇଛନ୍ତି କବି ଲେଖନୀରେ –

"ଧ୍ରୁବ ବାଳକ ବ୍ରହ୍ମଜ୍ଞାନ କହିଲା
ଅଗନ୍ତି କରୋଦରେ ସିନ୍ଧୁ ରହିଲା
ପକ୍ଷନଥାଇ କପି ଗଗନ ଗତି
କର୍ପୂରରୁ ବିରହେ ଜାତ ତପତି
ବିଷ ହିଁ ହୁଏ ହିତ ସନ୍ନିପାତର
ବାସୁକି ବିନା ପୃଥ୍ୱୀ ଧାରଣ ନରେ ଯେ
ରାଜ୍ୟ ନଥାଇ ସର୍ବ ସମ୍ମତେ ରାଜା
କନ୍ଦର୍ପ ହେଉଅଛି ପୃଥ୍ୱୀରେ ପୂଜା
ଶବଦ ଶୁଭେ ସର୍ପ ଶୃତି ନଥାଇ
ପ୍ରହଲ୍ଲାଦ ମହୀନ୍ଦ୍ର ଜନକ ଦ୍ରୋହି
ଏକଥା ମାନ ଯଥା ହୋଇଛି ଘେନ
ତଥା ସତ ହୋଇବ ତୁମ୍ଭ ସପନହେ
ସପନ ଯେବେ ତୁମ୍ଭେ ସତ ନକର
କହ କାହିଁ କି ଅଛି ତା ଦେଲା ହାର ।"

ଶୃଙ୍ଗାର ରସର ଉଦେକ ପାଇଁ କୁଚ ମଣ୍ଡଳର ବିଭିନ୍ନ ମନୋହର ବର୍ଣ୍ଣନା ରୀତି ଯୁଗୀୟ କାବ୍ୟରେ ଦେଖାଯାଏ । ଏଠାରେ ଚନ୍ଦ୍ରଭାନୁ ନାୟକ ଲାବଣ୍ୟବତୀକୁ ସ୍ମରଣ କରି ବିରହରେ ତାର ରୂପକୁ ଝୁରି ହୋଇଛି । ସେଥିରୁ କିଛି ଉଦାହରଣ –

"ସୁ ସଞ୍ଚ ଘଞ୍ଚ କୁଚ ଯେମନ୍ତ ଦିଶେ
କେମନ୍ତ ବୋଲି କୁହା ନଯିବ ଶେଷେ
ଏମନ୍ତ ବୋଲିବାଣୀ ପବିତ୍ର ପାଇଁ
ବର୍ଣ୍ଣନା କରୁଅଛି ଉପମା ଦେଇ ।
ସୁନ୍ଦର ସଦନେକି ସ୍ୱର୍ଣ୍ଣ ପଞ୍ଜରା
ଧାତା ରଖିଛି ଆଖି ପକ୍ଷୀକି ଧରି ।

ମେରୁ ଏତିକି ବୋଲି ଉଚ୍ଚ ଦେଖାଇ
ମନ ମିହିର କର ଛାଡି ନ ଯାଇ ଯେ ।
ବାଳୀ ଅନେକ ଦାଉ କନକ ବହ୍ନି ।
ଭୁଜାନ୍ତରକୁ କ୍ରୋଡ ସମସ୍ତେ ବୋଲି ।
ସ୍ତନ ମଧୁର ମଧୁ କୋଷକୁ ଆଣି
ସଞ୍ଚଲେ କି ରୋମାଳୀ ସରଘା ଶ୍ରେଣୀ ।
ଶୃଙ୍ଗାର ରସଲତା ରୋମାଳୀ ବ୍ୟାଜ
ଫଳିଛି ପ୍ରେମାମୃତ ଫଳ ଉରଜ ।

ଶ୍ରୀହର୍ଷ ନିଜ କାବ୍ୟକୁ "କାବ୍ୟେ ଚାରୁଣୀ ନୈଷଧୀୟ ଚରିତେ ସର୍ଗୋନିସଗୋଜ୍ୱଳଃ" କହିଥିବା ବେଳେ ଏହି ଛାନ୍ଦରେ ଶେଷରେ ଉପେନ୍ଦ୍ର କହିଛନ୍ତି "ଏ ଛାନ୍ଦ ଅତି ରମ୍ୟ ହୋଇଲା ପ୍ରାନ୍ତ ଯେ ।" ୧୫ଶ ଛାନ୍ଦରେ ଐନ୍ଦ୍ରଜାଲିକ ତାର ଇନ୍ଦ୍ରଜାଲ ପ୍ରଦର୍ଶନ ପାଇଁ ନଟ ନଟୀ ମାନଙ୍କ ସହ ସିଂହଳରେ ପ୍ରବେଶ କରିଛି । ଗୌଣ ଚରିତ୍ର ହେଲେ ମଧ ନଟ ନଟୀ ମାନଙ୍କ ଅନୁରୂପ ଚିତ୍ରଣ ଅନୁପମ ରୀତିରେ କରିଛନ୍ତି । ନଟ ବର୍ଣ୍ଣନାରେ -

"ହସୁଁ ଦିଶେ ସୁନା ଖିଳ ଝଲଝଲ ଦନ୍ତେ
ପାନେ ପାଚି ଯାଇଛି ସେ ଜମ୍ବୁ ଫଳ ମତେ ଯେ ।
ସିନ୍ଦୁର ଚି ତାହିଁ ତା ହଟେ କେଶ୍ୱର ପଣେ
ବିଭୁତି ଘଷି ହୋଇଛି ଯୁଗଳ ଇକ୍ଷଣେ ଯେ ।"

ସେପରି ନଟି ବର୍ଣ୍ଣନାରେ -

"ସେ ବିଟ ପି ବିଟପି ଧଇର୍ଯ୍ୟ ବିଟପକି
ଛେଦନ କୁଠାର ପରା ମନରେ ତରକି ଯେ ।
X X X X X X X
ଅଙ୍ଗେ ଅଙ୍ଗେ କରିଅଛି ସେବନ ହଳଦି
କାନ୍ତି ହୋଇଛି ପାଚିଲା ଆମ୍ବ ପ୍ରତିଦ୍ୱନ୍ଦି ।"

ଏହି ଛାନ୍ଦରେ କବିଙ୍କ ଚମତ୍କାର ରଚନାର ପରିପାଟି ଦୃଷ୍ଟିଗୋଚର ହୁଏ । ରାମାୟଣ ବିରାଟ ଗ୍ରନ୍ଥର ବିଷୟକୁ ଗୋଟିଏ ଛାନ୍ଦର କେତୋଟି ମାତ୍ର ପାଦରେ

ପ୍ରକାଶ କରିବା କବି ସମ୍ରାଟଙ୍କ ପକ୍ଷରେ ସମ୍ଭବ ହୋଇଛି । ଟୀକା ରାମାୟଣ ୧ ୦ ୦ ପୃଷ୍ଠାରେ ମୁଦ୍ରିତ ହୋଇଥିଲେ ମଧ୍ୟ ସେଥିରେ ରାମାୟଣ ସବୁ ବିଷୟ ବର୍ଣ୍ଣିତ ହୋଇ ପାରିନାହିଁ । କିନ୍ତୁ ଏଠାରେ କେତୋଟି ପାଦରେ ମୁଖ୍ୟ ଗୌଣ ପ୍ରାୟ ସବୁ ବିଷୟକୁ ସ୍ଥାନିତ କରିଛନ୍ତି । ଇନ୍ଦ୍ରଜାଲ ଦେଖାଇବା ସମୟରେ ରାମାୟଣ ବିଷୟବସ୍ତୁ ଉପସ୍ଥାପନା କରିଛନ୍ତି । ସେଥିରୁ କିଛି ପଦ -

"ପଥରେ ପଥରେ ନାରୀ କରିକଲେ ମୋଦ,
ଦାସବତ୍ସଳ ଦାସରେ ଧୁଆଇଲେ ପଦ ଯେ ।
ଖଣ୍ଡ ପରଶୁ କୋଦଣ୍ଡ ବେନି ଖଣ୍ଡକରି,
ସୀତା ବିବାହ ନିର୍ବାହ ନୃପଦର୍ପହରି ।
ବଜ୍ରପରି ଭୃଗୁ-ପତି ଭୃଗୁ ଭେଦିଲେ,
ଅଭିଷେକ କରିବା ମମତା ପିତା କଲେ ।
ମନ୍ଥରା ମନ୍ଥନେ କନ୍ତାନୁଜ ଘେନି ସଙ୍ଗେ,
ବିଚିତ୍ର ଚିତ୍ରକୁଟରେ ବିହରିଲେ ରଙ୍ଗେ ଯେ ।"

ଏତେ ବଡ ସୁନ୍ଦରା ଓ ଲଙ୍କା କାଣ୍ଡକୁ ମାତ୍ର କେତୋଟି ପଦରେ ବର୍ଣ୍ଣନା କରି ବିଜ୍ଞ ବୁଧଙ୍କୁ ତଥା ଓଡିଆ ସାହିତ୍ୟକୁ ତାଙ୍କର ଅମ୍ଳାନ ଦାନରେ ଭରି ଦେଇଛନ୍ତି ।

"ଜଳେ ସେତୁ କଲେ ଶିଳେ ନଳେ ଦେଇଯଶ
ଲଙ୍କା ବେଢି ଶଙ୍କା କରାଇଲେ ଦୈତ୍ୟ ବଂଶ
ବିଷଧର ଫାଶ ନାଶ କଲା ବିଷ
ଅନାକିନୀ ଅନେକ ହୋଇଲେ ରଣେ ନାଶ ।
ଘଟକର୍ଣ୍ଣ ଘଟ ତ୍ୟାଗ ଅତିକାୟ କ୍ଷୟ
ପୋରହିତ ଜିତ ହତ ବ୍ରହ୍ମାସ୍ତ୍ର ଇଦୟ ଯେ
ହନୁମାନ ଗନ୍ଧମାଦନ ଗମନ ଲିଳା
ଭରତ ଇଦନ୍ତ ପ୍ରାପ୍ତ ଲକ୍ଷ୍ମଣ ଜିଇଲା ଯେ ।
ଶ୍ରୀ ରାମଚନ୍ଦ୍ର ନରେନ୍ଦ୍ର ଶର ସର୍ପ ନେଇ
ଲଙ୍କପତି ଅଙ୍କ ପେଟି ଭିତରେ ପୁରାଇ ଯେ ।

ପୁଷ୍ପକରେ ପୁଷ୍ପରେ ସବଳେ କଲେ ଗତି
ଯୋଦ୍ଧା ବର ଅଯୋଧାରେ ହୋଇଲେ ନୃପତି ଯେ ।"

ଚନ୍ଦ୍ରଭାନୁ ଅଭିଷିକ୍ତ ରାମଚନ୍ଦ୍ରଙ୍କୁ ଲାବଣ୍ୟବତୀକ ପାପ୍ତି ହେବାପାଇଁ ପ୍ରାର୍ଥନା କରିଛି । ଏହା କେବଳ ଲାବଣ୍ୟବତୀଙ୍କୁ ଦୃଶ୍ୟ ହେଉଅଛି ।

"ହେ ରାମ ଶ୍ୟାମସୁନ୍ଦର ଅଛ ଦତ୍ତ କରି
ସୁଗ୍ରୀବକୁ ତାରା ବିଭୀଷଣେ ମନ୍ଦୋଦରୀ
ଲାବଣ୍ୟବତୀ ଯୁବତୀ ଶିରୋମଣି ମୋର
ମନୋହାରୀ ହୋଇବ ଏମନ୍ତ କୃପା କର
ପ୍ରଭୁ ତୁମ୍ଭେ ବିରହ ବେଦନା ଅନୁଭବି
ନ ଘେନିଲେ ଆଉ କାହା ଆଗେ ଜଣାଇବି ।
କରୁଣା ଲୋଚନେ ରାମ ଅସ୍ତୁବାଣୀ ଭାଷି
ଦେଖି ଶୁଣି ଏମନ୍ତ ଯେ କସ୍ତୁରୀ ସୁବାସି ଯେ ।"

ଷୋଡଶ ଛାନ୍ଦରେ ଶେଷରେ କବି ନିଜର ପରିଚୟ ପ୍ରଦାନ କରିଛନ୍ତି ।

"ଯେ ବଂଶେ ଇଷ୍ଟ ଦୁର୍ଗା ଦେବୀ
ବରହି କୋଷରୁ ସମ୍ଭବି
ମନୁଷ୍ୟ ଏହି ଅଦଭୁତ
ଭଞ୍ଜାନୁ ଭଞ୍ଜ ନାମସତ ।
ବିଶିଷ୍ଟ ବଶିଷ୍ଟ ପାଳିକା
ଶ୍ରୀରାମେ ଦତ୍ତ ରାଜା ଟୀକା ।
ସେକୁଳେ ରାଜା ଧନଞ୍ଜୟ
ସମସ୍ତ ଗୁଣର ନିଳୟ ।
ଘୁମୁସର ଅଧିପ ପଣେ
ଲୋକେ ବିଖ୍ୟାତ କବି ଗୁଣେ ।
ତଦ୍ ଗତ ତାହାଙ୍କ ତନୁଜ

ନରେଶ ନୀଳକଣ୍ଠ ଭଞ୍ଜ ।
ତାହାଙ୍କ ଜ୍ୟେଷ୍ଠ ସୁତ ମୁହିଁ
ଉପେନ୍ଦ୍ର ଭଞ୍ଜ ନାମ ବହି ।
ତାରକ ମନ୍ତ୍ର ପରସାଦେ
ମୋହର କବି ପଣଭଜେ ।
କଳଙ୍କ ବିହିନ ମୋ ଗୀତ
ଖଳରାହୁରେ ଅଦୁଷିତ ।"

ବ୍ରହ୍ମଚାରୀ ଶୁକ ଦ୍ୱାରା ଲାବଣ୍ୟବତୀଠାରୁ ଯାଇ ଚନ୍ଦ୍ରଭାନୁ ମନେ ଥିବା ପ୍ରେମକୁ ଦୃଢ଼ୀଭୂତ କରି ଲାବଣ୍ୟବତୀ ପାଇଁ ପତ୍ର ଆଣିଛି । ଶୃଙ୍ଗାରୀୟ ଚେତନାରେ ପତ୍ର ରସାଣିତ ହୋଇଛି ।

"ମନ ମୀନହୃଦ ସରୋବରେ ଥିଲା କଟାକ୍ଷ ବନିଶି ପକାଇ
ତାରବଦନେ ପ୍ରେମ ସୁଧା ଦେଇ ।
ଆକର୍ଷି ନେଇ ଉରଜ କଳସୀରେ ମଦଳସୀ ଅଛୁ ଧୋଇରେ ।"

ଲାବଣ୍ୟବତୀ ମଧ ସଖୀ ଦ୍ୱାରା ପତ୍ର ଲେଖାଇ ସେଥିରେ ଚନ୍ଦ୍ରଭାନୁ ଗୁଣକୁ ପ୍ରଶଂସା କରାଯାଇ, ବ୍ରହ୍ମଚାରୀଦ୍ୱାରା ପଠାଇଛନ୍ତି ।

"କର ଯଶକୁ ଅଛ ବିସ୍ତାରୀ
ଦୟାଳୁ ଶୁଣତ ନହାଇଜାଣି ।
ତୁମ୍ଭେ କେତେ ପର ଉପକରୀ, ହେ ସୁନ୍ଦର ।
ହୃଦ ବନେଥିଲା ମନ ମୃଗ
ତହିଁ ବିରଳ ଅନଳ ଯୋଗ
ପଳାଇ ତହିଁ ତୁମ୍ଭ ଶୋଭାବନେ ପଶିଲା
ତହିଁ ନାହିଁ ଏ ଉଦ୍‌ବେଗ ହେ ସୁନ୍ଦର ।"

ଲାବଣ୍ୟବତୀ କାବ୍ୟରୁ ଦ୍ୱାବିଂଶ ଛାନ୍ଦ ଅତି ମନୋରମ ହୋଇଛି । କବି କାବ୍ୟାରମ୍ଭରେ "ପଦ ସରଳ ଧ୍ୱନି ମାନସ ମୋହିବ, ଅର୍ଥଜନ ପ୍ରବରକୁ ଆନନ୍ଦ

କରିବ ।" ତାହା ଏଠାରେ ସାକାର ହୋଇଛି । ଭଞ୍ଜ ସଙ୍ଗୀତ ସର୍ବଜନ ବିଦିତ ବୋଲି କହିଥିଲେ । ଏହି ଛାନ୍ଦଟି ତାର ପ୍ରମାଣ । ନବମେଘର ବର୍ଷାରମ୍ଭ ଆର୍ବିଭାବ ହୋଇଛି । ବିରହିଣୀ ଲାବଣ୍ୟବତୀର ମନ ଭାରାକ୍ରାନ୍ତ ହୋଇଛି । ତାର ବର୍ଣ୍ଣନା ସହ ଅନୁପ୍ରାସର ବହୁଳ ପ୍ରୟୋଗ ଫଳରେ ଶୃତିମଧୁର ହୋଇଛି ।

"ଦେଖି ନବ କାଳିକା ବକାଳିକା ମାଳିକା
ଆଳି କାଳି କାଳିକା କାନ୍ତ ସ୍ମରି
ରକ୍ଷା କେମନ୍ତ କରି କରିବା ମଉକରି
ଗତିକି ଏମନ୍ତ ବିଚାରି ସେ ସହଚରୀ
ଭାବେ ବଞ୍ଚିଲେ ଏକାଳକୁ, କଥା ଥିବ କାଳ କାଳକୁ ।।
ଏକେ ତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ
ନ ଲଭୁ ବଲ୍ଲଭ ମେଳକୁ ରେ ।
ପୟୋଧର କୁଧର ବିଚାରି ପୟୋଧର
ଗ୍ରାସେଟି ପୁରୋଦର ଉରେ
କରି ପିକକୁ ମୁକ ମକ ମକ ଶାମୁକ
କାମକ ଚମକକୁ ନିତ୍ୟେ ।।
ରାମା ହେବାକୁ ଶିବା ଶିବାଗଣ ପୋଷିବା
ଶିବଙ୍କୁ ମନାଇବା ବ୍ରତେ, ରେ ସହଚରୀ
ତୋଷି ଖଣ୍ଡ ପରଶୁଧର, ନିତି ଲିପା ଆଚୁନପୁର
ଧନକୁ ଉପଚାର ଧନକୁ କି ବିଚାର
ପେଷ ଗୋ ଚାର ନ ପଚାର ।"

ପଦ ସଂଯୋଜନାରେ ଭାବ ଗାମ୍ଭିର୍ଯ୍ୟ କିପରି ପ୍ରସ୍ଫୁଟିତ ତାର ଏକ ଉଦାହରଣ-

"ହିତ ଆନମାନଙ୍କୁ ସତ କାମି ଜନଙ୍କୁ
ଅହି ପରା ଅହିତ ଏହି

ହତ କୁଶାନୁ ସାନୁ-     ମାନରୁ ଭାନୁ ଭାନୁ
ତାପରୁ ନିସ୍ତରିଲା ମହିରେ ସହଚରୀ
ବିରହା ନଳ ହୃଦସ୍ଥଳେ   ଜଳେ ସେ ହତ ନୁହେ ଜଳେ
କରୁଛି ଜାତଜାତ     ବେଦକୁ ସତ ଶତ
ହ୍ରଦା ଛଳରେ ଘନ କୋଳେ ।"

ଏହାପରେ ଚନ୍ଦ୍ରଭାନୁ ସହ ଲାବଣ୍ୟବତୀର ରମେଶ୍ୱର ମନ୍ଦିରରେ ଭେଟ ହୋଇଛି । ବିବାହ ଯଥାରୀତି ଅନୁଷ୍ଠିତ ହୋଇଛି । ମଧୁ ଶଯ୍ୟା ବର୍ଣ୍ଣନା ଶୃଙ୍ଗାରୀୟ ଚେତନାରେ ରସାଣିତ ହୋଇ ପ୍ରକାଶ ଲାଭ କରିଛି ।

"ଦ୍ୱାର ପାଶେ ଆସୁ କାନ୍ତ ଦେଖିଲା ସୁନେତ୍ରା,
ରତିକି ଆସଇ କରି ନାରୀ ରଥ ଯାତ୍ରା ।
ଲିଳା କରୁଅଛି କିବା ହେମ ପୁଷ୍ପଲତା
ଏ ଉତୁପାତୁ ପଡିବି ଖେଳେ ଚଞ୍ଚଳତା ।
କାଞ୍ଚି ଅସ୍ଥିର, କୁନ୍ତଳ ଆକର୍ଷଣ ହେବ
ମାଳବରେ ଛିନ୍ନଭିନ୍ନ ଦଶା ପଡିଯିବ ।
ଅଙ୍ଗଦେଶରେ ହୋଇବ ଅନେକ ସଙ୍ଗର
ପୁଣିକା ପ୍ରଭା ଖେଳାଇଲା ପରକାର ।
ମନ ତାର ଅଧର ପାନରେ ମତ୍ତ ଲଭେ
ରସନାରେ ରସ ଆସ୍ୱାଦନ କରି ଭାବେ ।
ଏଥାଉ ଅମୃତ ପିଇ କିଲଭନ୍ତି ଦେବେ
ମଧୁପଦେ ମଧୁମତ୍ତ ପିଶୁଳ ଦାନବେ ଯେ ।
ଭାଳି ଲାଏ ମେରୁ ଉରଜକୁ ଧରିକରେ
ବାଞ୍ଛା କରି ଆଉ କେଉଁ ସ୍ୱର୍ଗ ପ୍ରାପତରେ

କରଜ ଚଳାଇ ତନୁ ଶୋଭାକୁ ଚାହିଁଲା
ଭାବେ ଏତେ କାଳେ ନିପ ଫୁଲ ନିସ୍ତରିଲା
ଦର୍ଶନେ ଦଶନ କରି ଖଣ୍ଡ ମଣ୍ଡଳକୁ
ଚାଳି ଦେଲା ଚନ୍ଦ୍ରଥିଲା ଶରୀର ସ୍ଥଳକୁ
ଶିତ୍କାର ଭଜି ରସିକା ହୋଇଲା ଅଜ୍ଞାନ
ବିଶେଷତ ମାଦକ ପାନରେ ଯଥା ଜନ ।"

ଏହିପରି ରୀତି ମିଳନରେ ପ୍ରାୟ ପ୍ରାଞ୍ଜଳ ବର୍ଣ୍ଣନା ତ୍ରୟୋବିଂଶ ଛାନ୍ଦରେ କବି କରିଛନ୍ତି । ମିଳନ ଅନ୍ତେ କାବ୍ୟରେ ପୁଣି ବିଚ୍ଛେଦ ଆସିଛି । ବିରହରେ ବିଭିନ୍ନ ଋତୁ ଚିତ୍ରମଧ ସ୍ଥାନିତ ହୋଇଛି । ଶେଷ ପୁଣି ମିଳନ କରାଇ କାବ୍ୟର ପରି ସମାପ୍ତି କରିଛନ୍ତି ।

ଏହି କାବ୍ୟରେ ବୀରହର ବହୁଳ ଚିତ୍ରଣ ଦେଖିବାକୁ ମିଳେ । ଅନାବିଳ ପ୍ରେମ, ବିଶୁଦ୍ଧ-ପ୍ରଣୟାନୁରାଗ, ବିଦ୍‌ଗଧ ନାୟକ ଓ ବିଦ୍‌ଗଧ ନାୟିକାଙ୍କ ସୁନ୍ଦର ସରସ ରସାଳ ବର୍ଣ୍ଣନାର ଚମତ୍କାରିତାରେ କବି ସମ୍ରାଟ ଅନବଦ୍ୟ ରଚନାର ପରାକାଷ୍ଠା ଦେଖାଇଛନ୍ତି । ସଂସ୍କୃତ ସାହିତ୍ୟର ଯେଉଁ କାବ୍ୟିକ ନିୟମ ମାନ ରହିଛି ସେଥିରୁ ସେ ବର୍ହିଭୂତ ହୋଇ ନାହାନ୍ତି । ଯଦି କିଛି ଅଶ୍ଳୀଳ ବୋଲି କୁହାଯାଏ ସଂସ୍କୃତ ରଚନାରେ ବହୁଗୁଣରେ ତାହା ଦେଖିବାକୁ ମିଳେ । ଜୟଦେବଙ୍କ 'ଗୀତ ଗୋବିନ୍ଦ'ରେ ଯେଉଁ ଶୃଙ୍ଗାରୀୟ ବର୍ଣ୍ଣନା ଅଛି ତା ତୁଳନାରେ ଭଞ୍ଜଙ୍କ ବର୍ଣ୍ଣନା ବହୁତ କମ ମନେ ହୁଏ । ଏହି ମହାନ କାବ୍ୟ ପାଇଁ ଓଡିଆ ଭାଷା ଓ ସାହିତ୍ୟ ଯୁଗ ଯୁଗ ଧରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପାଖରେ କୃତଜ୍ଞ ରହିବ । ଦୁଃଖର କଥା ଭଞ୍ଜ ସାହିତ୍ୟ ଯେଉଁ ଗବେଷଣା ହେବା କଥା, ଭଞ୍ଜଙ୍କ ସାହିତ୍ୟର ପରିପ୍ରସାର ପାଇଁ ଯାହା ବିସ୍ତୃତ ଭାବେ ହେବା କଥା ତାହା ଏ ପର୍ଯ୍ୟନ୍ତ ଓଡିଶାରେ ହୋଇପାରିନାହିଁ ।

# କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟକୁ ଉତ୍ତମ ରୂପେ ସମୀକ୍ଷା କରିବା ସାଧାରଣ ରୂପେ ସମ୍ଭବ ନୁହେ । ଏହା ସଂସ୍କୃତ ଭାଷାର ଶ୍ରେଷ୍ଠ କାବ୍ୟମାନଙ୍କ ସହ ତୁଳନୀୟ । ଏହା କବିଙ୍କର ଶ୍ରେଷ୍ଠତମ କୃତି ମାତ୍ର ଏହାର କ୍ଲିଷ୍ଟତା ପାଇଁ ସାଧାରଣ ପାଠକଠାରୁ ଦୂରରେ । ସେହି ସମୟରେ ଏହି ପରି କାବ୍ୟକୁ ପଣ୍ଡିତଗଣ, ସଂସ୍କୃତ ସାହିତ୍ୟର ସମାଲୋଚକ ବୃନ୍ଦ, ସମ୍ଭ୍ରାନ୍ତ ବର୍ଗ ଓ ରାଜ ଦରବାର ସଭ୍ୟଗଣ ବିଶେଷ ଆଦର କରୁଥିଲେ ।

ଓଡିଆ କାବ୍ୟକୁ ସଂସ୍କୃତ ଅଭିଜ୍ଞ ପଣ୍ଡିତ ମାନଙ୍କ ନିକଟରେ ଉପଯୁକ୍ତ ସ୍ଥାନ ପାଇବା ସକାଶେ ଏପରି ଅନବଦ୍ୟ, ଅଳଙ୍କାରର ଜଟିଳ ପ୍ରୟୋଗ, କଠିନ ଶବ୍ଦାବଳୀର ପ୍ରୟୋଗ, ଭାଷରେ ବକ୍ରୋକ୍ତି ମାଧମରେ ଭାବ ପ୍ରକାଶନ, ଗୋଟିଏ ପଦରୁ ବିଭିନ୍ନ ଅର୍ଥ ଉତ୍ପନ୍ନ କରୁଥିବା ଭାଷା ଓ ତର୍କ ପୂର୍ଣ୍ଣ ଭାଷଥିବା କାବ୍ୟକୁ ସୃଷ୍ଟି କରିଥିଲେ ।

କାବ୍ୟଟି କାଳ୍ପନିକ କାହାଣୀକୁ ନେଇ ରଚିତ ତାହା ମଧ ଗତାନୁ ଗତିକା ଚମ୍ପାନଗରୀର ରାଜା ବିଶ୍ୱାନନ୍ଦକ ଓ ରାଣୀ ବିଚିତ୍ର କଳା ଉତ୍ତମ କନ୍ୟା ପ୍ରାପ୍ତି ପାଇଁ ଇଚ୍ଛୁକଥିଲେ । ବୁଦ୍ଧି ସାଗର ନାମକ ବିଶ୍ୱସ୍ତ ମନ୍ତ୍ରୀକୁ ରାଜ୍ୟ ଶାସନ ଭାରଦେଇ ବଦରିକା ଶ୍ରମ ଦର୍ଶନରେ ଗଲେ । ଗଙ୍ଗାସ୍ନାନ ବେଳେ ରାକ୍ଷସଠାରୁ ବ୍ରହ୍ମାଙ୍କ ହଂସକୁ ରକ୍ଷା କରି ବ୍ରହ୍ମଙ୍କାଠାରୁ ରତିମର୍ଦ୍ଧା ନାମକ ଦେବ ତରୁଣୀ ପ୍ରାପ୍ତି ହୋଇଛନ୍ତି । ତାହା ଠାରୁ ଦିବ୍ୟ କନ୍ୟା ଜାତ ହୁଏନ୍ତେ ସେ ତରୁଣୀ ବ୍ରହ୍ମ ଲୋକ ଗମନ କରିଛି । ଯେଉଁ କନ୍ୟା ରତ୍ନ ରାଜା ପ୍ରାପ୍ତ କଲେ ତାର ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ତାର ବିବାହ ପାଟଳୀପୁତ୍ର ରାଜକୁମାର ପୁଷ୍ପକେତୁ ସହ ହୋଇଛି । ଏହି କାବ୍ୟରେ ନାୟକ ନାୟିକାଙ୍କ ମିଳନ ପାଇଁ ବର୍ଣ୍ଣନା, ବିଚ୍ଛେଦର ବର୍ଣ୍ଣନା ଏ ସବୁର ଆନୁସାଙ୍ଗିକ ବର୍ଣ୍ଣନା ପାଇଁ ବିଭିନ୍ନ ଋତୁ ବର୍ଣ୍ଣନା ସହ ଅନ୍ୟାନ୍ୟ ପାତ୍ରପାତ୍ରୀର ବର୍ଣ୍ଣନା କରାଯାଇଛି । କବି ଏହି କାବ୍ୟ ବିଷୟରେ ତାଙ୍କର ଚିତ୍ର

କାବ୍ୟ ବନ୍ଧୋଦୟରେ ପ୍ରକାଶ କରିଛନ୍ତି ।

"ଛାନ୍ଦ କୋଟି ସୂର୍ଯ୍ୟ ତାରକା ପରି
ଯାନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦର ।।"

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟକୁ କେଉଁ ମାର୍ଗରେ ସୃଷ୍ଟି କରିବେ ତାର ପରିକଳ୍ପନା କବି ସମ୍ରାଟ ପ୍ରଥମ ଛାନ୍ଦରେ ବର୍ଣ୍ଣନା କରିଛନ୍ତି ।

"ରଚିବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଚରିତ
ସୁଜାତି ସୁମନା ପରି ହୋଇବ ଏ ଗୀତ
ସୁରଭିରେ ମୋହିତ ମାନସେ ହେବେ ଦିବ୍ୟେ
ଗୁଣବନ୍ତେ ହୃଦେ ମାଳ କରିଣ ଧରିବେ ।
ରସିକ ଭ୍ରମର ହେବେ ରସ ଘେନିବଶ
ନିର୍ଗୁଣେ ଘେନିଲେ ନ ଘେନିଲେ ଅଛି କିସ ।"

ନଗର ବର୍ଣ୍ଣନାରେ ଯେଉଁ ବିଚିତ୍ରତା ଦେଖାଇଛନ୍ତି ତାର ପଟାନ୍ତର ନାହିଁ ।

"ଅନନ୍ତ ମଣିରେ ସେ ଜ୍ୟୋତି ନାହିଁ
ଅନନ୍ତ ମଣି କିଣା ବିକା ଯହିଁ ।
ଯେଉଁ ପୁରେ ପଢେ ଶୁକ ବି ଯାକ
ଶୁକ ବିରଚିତ ଚରିତ ଶ୍ଳୋକ ।
ବୈଦ୍ୟ ଶାଦ୍ଧଳ ଅଶ୍ୱିନୀ କୁମାରେ
ମୃଗକରି ଚିତ୍ତେ ବିବେକ ବରେ ।
ଗଣଙ୍କ ଗଣଙ୍କ ଏମନ୍ତ ହୃଦେ
ଗୁରୁ ଗୁରୁ ହେବା ପଡିଲେ ବାଦ ।"

ନାୟିକା ଗୋଟେ ନୁହେଁ କୋଟିଏ ବ୍ରହ୍ମାଣ୍ଡ ସୁନ୍ଦରୀ ନାୟିକା ତାର ବର୍ଣ୍ଣନାରେ କବି ନିଜର ପରାକାଷ୍ଠା ଦେଖାଇବାରେ କୁଣ୍ଠିତ ହୋଇ ନାହାନ୍ତି । ବାଲ୍ୟ, କିଶୋରା, ଯୌବନ ସମୟରେ ବର୍ଣ୍ଣନାକୁ ଗୋଟିଏ ଥରରେ ଶବ୍ଦ ବିନ୍ୟାସର ବିଚିତ୍ରତା ସହ

ଅର୍ଥର ଉତ୍କର୍ଷତା ଦେଇ ବର୍ଣ୍ଣନା କରିଛନ୍ତି -

"ନାନା ଶବଦରେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଛାନ୍ଦ ବିବେଚନା
ବାଲ୍ୟ, ପ୍ରୌଗଣ୍ଡ, ଯୌବନରୀତିକି
ଆନ ଆନ ସ୍ଥାନେ ଦେଲା ସ୍ଥିତିକି ।
ରଜନୀ କର ମାଗିଲା ଖେଳିଲା
ରଜନୀକର ସ୍ନେହେ ତା ଛାଡ଼ିଲା ।
ଧାତ୍ରୀ ମଣ୍ଡପ ଦେବାରୁ ଭୁଲାଇ
ଧାତ୍ରୀ ମଣ୍ଡନା ନାମ ଯେ ବୋଲାଇ ।
ନେତ୍ର ଗତିରେ ଥିଲା ଅଧିରତା
ନେତ୍ର ଗତିରେ ଆଣିକଲା ରତା ।
କନ୍ୟା ବର କରିବାର କଣ୍ଠାଇ
କନ୍ୟାବର ଚିତ୍ତୁ ଦେଲା ଛଡ଼ାଇ ।"

ଯୌବନ ଆରମ୍ଭ ବର୍ଣ୍ଣନାକୁ ମନୋଜ୍ଞ, ଅର୍ଥପୂର୍ଣ୍ଣ ଚିତ୍ରଣ କରିଛନ୍ତି ।

"ଅଙ୍କୁରାଲା ନୂତନ ରୋମାଳୀ
ସ୍ୱତଃ ପ୍ରଥମ ରସ ବର୍ଣ୍ଣାବଳୀ ।
ଅତି ଶୋଭା ନାଭି ଏହି ପ୍ରକାର
ଧାଡ଼ି ପ୍ରାନ୍ତେ ରଖି ଦେଲା ଠ କାର ।
ଆଉ ବର୍ଣ୍ଣ ଚୁର୍ଣ୍ଣ କେଶେ ରଖିଲା
ଥିଲା ଅସ୍ତବ୍ୟସ୍ତ ସମେ ରଖିଲା ।
ହ୍ରସ, ଦୀର୍ଘ ପ୍ଲୁତ ରଖି ତାରୁରେ
କଲା ପ୍ରସାର ଦେଖାଇ ଭୁରୁରେ ।
କଲା ନିତମ୍ବ-ପୃଥ୍ୱୀ ଚକ୍ରବର୍ତ୍ତି

ବେଗେ ଅବିବେକ ଗଲା ନିବର୍ତ୍ତି
ଦୀପ୍ତି ପ୍ରଧାନ ପ୍ରକାଶ ବହନେ
ନିଷ୍ଠେ ମଣ୍ଡିତ ସେ ସର୍ବ ଶୋଭନେ ।"

ଶବ୍ଦ ଜ୍ଞାନରେ ଅପାର ପାଣ୍ଡିତ୍ୟ ଲାଭ କରିଥିବା ଭଞ୍ଜ ତାଙ୍କ ସୃଷ୍ଟିରେ ବିରଳ ପ୍ରତିଭାର ଅଧିକାରୀ ହୋଇଛନ୍ତି । ଯୌବନର ପ୍ରାରମ୍ଭିକ ଅବସ୍ଥାକୁ ସେ ଦ୍ୱିବୋଧ ଶବ୍ଦ ଚାତୁରୀ ପ୍ରୟୋଗରେ ରସାଣିତ କରି ତାକୁ ସ୍ଥୁଳ ଅର୍ଥରେ ରାମାୟଣର ସୂଚକ କରିଛନ୍ତି ।

"କଲାକି ସୃଷ୍ଟି କିଛି ନ ହୁଡିଲା
ହରି ଲିଳା ଏ ରୂପେ ନିବାଡିଲା ।
ସୁଗ୍ରୀବରେ ଚନ୍ଦନ ମିଶ୍ରିତ
ରାମ ଲକ୍ଷ୍ମଣ ମୁଖେ ପ୍ରଶଂସିତ
ପ୍ରକାଶିତ ଚନ୍ଦ୍ରହାସ ଝଲକ ।
ମନ୍ଦୋଦରୀ ବର ଶକ୍ତି ତିଳକ
ମେଘନାଦ ଶିକ୍ଷା ହାସ ଝଲକି
ଦକ୍ଷଧରିକି ସୁମନା ବଳିକ ।"

ଏଠାରେ ରାମାୟଣର ବିଷୟ ବସ୍ତୁ ବୋଧ ଗମ୍ୟ ସରଳ ଭାବେ ହେଉଛି ଭଞ୍ଜଙ୍କ ଭାବନାରେ ନାୟିକାର ଉତ୍ତମ ଗ୍ରୀବାରେ ଚନ୍ଦନ ଲେପନ ହୋଇଛି । ଚନ୍ଦ୍ରହାସ ମୁଖ ମଣ୍ଡଳରେ ଝଟକୁଛି । କୃଶଦୋରୀ ହେଲେ ମଧ ଶକ୍ତି ପ୍ରୟୋଗରେ ପାରଙ୍ଗମ । ମେଘନାଦର ପୁଚ୍ଛ ଭଳି କୁଞ୍ଚିତ ଘନ କେଶ ରାଶି ଶୋଭିତ ଦିବ୍ୟ ସୁମନା ବଳୀ ବା ପୁଷ୍ପମାଳାରେ ମଣ୍ଡିତା ହୋଇଛି । ସେହି ପରି କବି ରୂପ ବର୍ଣ୍ଣନାରେ ମହାଭାରତର ଚିତ୍ର ଦେଇଛନ୍ତି ।

"ନେତ୍ର ସୁ-ଭାରତ ଲିଳା କହୁଛି
କୃଷ୍ଣ ଅର୍ଜୁନ ରଙ୍ଗ କରାଇଛି ।

ଗୁଣ ଅଞ୍ଜନ କପାଳ କମାଣ
ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ ।
କର୍ଣ୍ଣ ବଜ୍ର ମଲ୍ଲୀ କଡି ବହିଲା
ସୁତା ଟଙ୍କ ଆଢେଣିରେ ଶୋହିଲା
ଦ୍ରୋଣ ସୁତ ଉତ୍ତର ହିଁ ବିଖ୍ୟାତ
କଲାକି ଉପଲକ୍ଷଣା ସାକ୍ଷାତ ।"

ଶୃଙ୍ଗାର ରସକୁ କାବ୍ୟରେ ଜୀବନ୍ତ କରିବାକୁ ଯୌବନ ତନୁ ବଲ୍ଲରୀର ଶୋଭାକୁ ଅପରୂପ ଉପମା ପ୍ରୟୋଗ କରି ସରସ ସୁନ୍ଦର ରସରେ ରସାଳ କରି ଛାନ୍ଦକୁ ମନୋହର ରୂପ ଦେଇଛନ୍ତି ।

"ମନ ସିଜ ବେନି କୁଟି ଭିଆଇ
ପତ୍ରାବଳୀରେ ଯତନେ ଛୁଆଇଁ ।
ରଞ୍ଜକ ଖ୍ୟାତ ନଳୀ ଅଛି ଯୋଖି
ମନୋହର ନାଭି ପଲ୍ୱଳ ଦେଖି ।
ମଧ୍ୟରେ କେଶରୀ ବୋଲି ଯେ
ଭିନ୍ନେ ଶବ୍ଦ ଅଛି କାହିଁ ପଳାଇଛି ମୁହିଁ କଟି ଦେଶ ଭାଳି ଯେ ।"

ନାୟକ ପୁଷ୍ପକେତୁର ବିରତ୍ୱ ସହ ସୌନ୍ଦର୍ଯ୍ୟ ଓ ଗୁଣାବଳୀର ବର୍ଣ୍ଣନା କରିଛନ୍ତି ।

"କାଳୀକାନ୍ତ ହର କାଳୀ ହର କାଲି କରିବେ ଉତ୍ସବ
ଦେଖା ଦେଖି ହୋଇ ଲେଖା ଲେଖି ହୋଇ
ନୟନେ ନୟନେ ରଖିବ,
ବୋଲି ନୃପଜା ନୃପଜ ପୁରେ ପଠିଆଇ
ଦୀନବନ୍ଧୁ ନାମ ଧୁଆଉଁ ଧୁଆଉଁ ଦୀନବନ୍ଧୁ ଦେଖା ନଯାଇ ।"

ବିରହ ଭାବନାକୁ କବି ଚିତ୍ତକର୍ଷକ ରୂପରେ ସଜାଇଛନ୍ତି –

"କୋଟି ଅମ୍ବୁଜକୁ ନିନ୍ଦୁଥିବ ସେ ଲପନ

ଚଳନେ କରିବସିବା ଦମ୍ଭକୁ କମ୍ପନ
ଡୋଳା ଜ୍ଞାନ ବୁଡାଇବ
ଶିଳ ମୁଖ ଚଳିବା ଶୋଭାକୁ ଛଡାଇବ ।
ବିକି ହୋଇଲିଣି କଲା ବେଳକୁ ଶ୍ରବଣ
ଯାହା ଶୋଭା ଚାହିଁ ଶୀଳା ହୋଇବ ଦ୍ରବଣ
ଭାବେ ମୁହିଁ ମନୁଷ୍ୟତ
ତରଳିଲା ଘୃତ ମତ ବହିଯିବି ସତ ।"

ନାୟିକା ନାୟକ ରୂପକୁ ଏପରି ବର୍ଣ୍ଣନା କରିଛି ଯେପରି ତା ବିଷ୍ଣୁଙ୍କ ଦଶାବତାର ରୂପର ଛଟା ବାହାରୁଛି । ଏପରି ବର୍ଣ୍ଣନାର ପରାକାଷ୍ଠା ଉପେନ୍ଦ୍ର ଭଞ୍ଜ ସମ୍ଭବ କରିଛନ୍ତି । ଯାହାକି ଅନ୍ୟତ୍ର ଏପରି ବିରଳ ବର୍ଣ୍ଣନା ମିଳିବ ନାହିଁ ।

"କଣ୍ଠ ଶଙ୍ଖ ମନ୍ଦିର ତାଡନ, ବରାହବରେ ଅଭିତ
ସେନର କେଶରୀ, ବଳୀ ଧ୍ୱଂସି, ତେଜେ ସହସ୍ରକର ବିଜିତରେ ସହି
ମୂର୍ତ୍ତି ରାମ ବଳଖ୍ୟାତ ମହି ବୁଧଗୁଣେ ଚନ୍ଦ୍ରହାସେ ଶୋହି
ବିଷ୍ଣୁଦଶ ରୂପେ ଏକେ ବହି ।"

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ଅଳଙ୍କାରର ବହୁଳ ବ୍ୟବହାର କରାଯାଇଛି । ନାୟିକା ମନ ସ୍ୱାତ୍ୱିକତାକୁ ସୁନ୍ଦର ସରସ ପଦ ସଂଯୋଜନ ସହ ଅଳଙ୍କାର ପ୍ରୟୋଗରେ ତାକୁ କିପରି ରସାଣିତ କରିଛନ୍ତି ତାର ଉଦାହରଣ –

"ଖର କରଜା ଖର କରଜା ବିଚିକୁଞ୍ଚିତ କେଶୀ
ଖଣ୍ଡ ପରଶୁ ଖଣ୍ଡ ପରଶୁ ପରତାପ କୁ ହସି ।"

ପ୍ରଭାତର ସୂର୍ଯ୍ୟୋଦୟ ବର୍ଣ୍ଣନାକୁ କବି ସୁନ୍ଦର ରୂପେ ଉପସ୍ଥାପନା କରିଛନ୍ତି ।

"ହେଲା ନିଶି ନାଶ ଗଲା ଦିଶିଦଶିକି ପ୍ରାଚୀ ନାଗରୀ ବର
ନୀଳ ଶାଢି ଛାଡି ଅରୁଣ ସରାଗେ ପିନ୍ଧିଲା ଲୋହିତାମ୍ବର

କି ଝଳି ଉଡିଯିବା ଇଚ୍ଛୁ ଅଳି,
ସେହି ପଦ୍ମନୀ ସୁରସଶାଳୀ, କାନ୍ତ ଉପରକୁ ଡୋଳାଢଳି ।"

ଭଞ୍ଜ ସାହିତ୍ୟ ହେଉଛି ଶବ୍ଦ ବିନ୍ୟାସର ଗନ୍ତାଘର । ଏଥି ପାଇଁ ଏହି କାବ୍ୟର ପଦୁଟିଏ ଉଦାହରଣ -

"ଆସାରସ ଘନକାଳ ହେଲା ଉଦୟ
ଅସିତ ପରବଳରୁ ଦରଶ ମୟ
ସ୍ତନିତ ହିଁ ସ୍ଫୁଟ କଳ କଣ୍ଠ ସରୁତ
ଅଚିର ପ୍ରଭାହିଁ ତାର ଦିଶେଦିଶେତ ।
କେକୀର ସଙ୍ଗୀତରେ କାମୁକ ଉଲ୍ଲାସ
ଧରମଣି ଆଚ୍ଛାଦନେ ଘନ ବିଳାସ ।"

ଏହା ଚିନ୍ତା ଦେଶାକ୍ଷ ରାଗରେ ରଚିତ ଓ ବର୍ଷା କାଳର ବର୍ଣ୍ଣନା କରାଯାଇଛି । ଏଥିରୁ ପ୍ରଥମ ଅକ୍ଷର ଗୁଡିକ କାଟି ଦେଲେ ହେବ କାଫି କା ମୋଦି ଓ ଏହା ଶୀତ କାଳର ବର୍ଣ୍ଣନା ହେବ । ସେହିପରି ୨ଟି ଲେଖାଏଁ ଅକ୍ଷର କାଟି ଦେଲେ ହେବ ରାଗ ମାଳବ ବରଡି ଓ ଏହା ଗ୍ରୀଷ୍ମ କାଳର ବର୍ଣ୍ଣନାକୁ ବୁଝାଇବ । ଏପରି ବର୍ଣ୍ଣନା ଓଡିଆରେ କାହିଁକି ଅନ୍ୟତ୍ର ମଧ ବିରଳ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରି ମହାକାବ୍ୟ ସଂକ୍ଷେପରେ ସମ୍ୟକ ପରିଚୟ ଦେବା ନିର୍ବୋଧତା କବି ନିଜେ ନିଜ କାବ୍ୟକୁ ତୁଳନା କରିଛନ୍ତି ।

"ଏତ ପରାକୃତ କାବ୍ୟ ଛାନ୍ଦ ପ୍ରାନ୍ତସତ,
ଦୃଷ୍ଟି ଦୃଷ୍ଟନ୍ତର ଏଥି ଅଛି ବିଶେଷତ
ଘେନ ନୈଷଧ ପରାୟେ ।
ଉପଇନ୍ଦ୍ର କହେ ବୁଧେ ପ୍ରମୋଦ କରାଏ ।"

ବହୁ ଶାସ୍ତ୍ରଦର୍ଶିତା ଏବଂ ଅଶେଷ ଜ୍ଞାନର ଭଣ୍ଡାର ଉପେନ୍ଦ୍ର ଭଞ୍ଜଙ୍କୁ କଳନା କରିବା ସହଜ ନୁହେଁ । ତାଙ୍କ ସୃଷ୍ଟିର ପଟ୍ଟାନ୍ତର ନାହିଁ ।

## କଳା କଉତୁକ

ଏହା କୃଷ୍ଣ ଲୀଳା ସମ୍ବଳିତ କାବ୍ୟ । ଦୀନକୃଷ୍ଣ ଦାଶଙ୍କ ରସକଲ୍ଲୋଳ ପ୍ରଭାବରେ ଲିଖିତ । ରସକଲ୍ଲୋଳର ପ୍ରଥମ ଛାନ୍ଦଟି କେବଳ ଅଦ୍ୟ ପ୍ରାନ୍ତ କ ଅନୁପ୍ରାସରେ ଲିଖିତ ଓ ଅନ୍ୟ ଛାନ୍ଦ ଗୁଡିକରେ ପ୍ରଥମ ଅକ୍ଷର କ ରୁ ଆରମ୍ଭ ହୋଇଛି । କଳା କଉତୁକ କାବ୍ୟର ନାମକରଣରେ ଅଦ୍ୟ ପ୍ରାନ୍ତ କ ଓ ସବୁ ଛାନ୍ଦରେ ମଧ ଅଦ୍ୟ ପ୍ରାନ୍ତ କ ର ବ୍ୟବହାର ହୋଇଛି । ଏହି କାବ୍ୟ ସରସ ପଦାବଳୀରେ ରମଣୀୟ ହୋଇଛି । କାବ୍ୟର ପ୍ରାରମ୍ଭରେ କବି ଲେଖିଛନ୍ତି –

"କମଳ ଧରହେ କମଳ ଧରଜିତ ନାୟକ
କମଳା ସାକ୍ଷାତ କମଳା ସାର ସୀତା ନାୟକ
କମଳା ସନ ଦିବ୍ୟ ରୂପେ ନିନ୍ଦେପୁଷ୍ପ ନାୟକ ।"

କୃଷ୍ଣଙ୍କ କେଳିକୁ କବି ବିଭିନ୍ନ ଭାବରେ ବର୍ଣ୍ଣନା କରିଛନ୍ତି ।

"କନ୍ଦର୍ପ ଭୁତ ଲଗାଇ ବିହାର ରଚିଲେ କାହିଁ
ବିଧିଚିହ୍ନି ଯାଇ ପୁଣି ସେ ଚିକିତ୍ସକ
କର୍ଣ୍ଣଧାର ହୋଇ କେତେ ଗୋପି ମୋହିଲେ ସରିତେ
ପୁଷ୍ପ କେଉଁ କେତେ ମୋହି ହୋଇ ମାଳିକ ।"

## ସୁଭଦ୍ରା ପରିଣୟ

ଶ୍ରୀକୃଷ୍ଣ ଭଗ୍ନି ସୁଭଦ୍ରା ଓ ଅର୍ଜୁନଙ୍କ ପ୍ରେମ, ପଣୟ ଓ ବିବାହର ବିଷୟବସ୍ତୁକୁ ନେଇ ଏହି କାବ୍ୟ ରଚିତ ହୋଇଛି । ସୁଭଦ୍ରା ପରିଣୟ ଅଦ୍ୟ 'ସ' ଅନୁପ୍ରାସରେ ଲିଖିତ । କାବ୍ୟରେ ଜଗନ୍ନାଥଙ୍କ ବିଗ୍ରହକୁ କବି କମନୀୟ ଶୈଳୀରେ ବର୍ଣ୍ଣନା କରିଛନ୍ତି ।

"ସମିଧ ଶରୀର କୃତ ବିଷ୍ଣୁ ନିଜେ ତହିଁ
ସୁଦରଶନେ ଆଶ୍ଚର୍ଯ୍ୟ ଅପବର୍ଗ ଦେଇ
ସରୂପ ଏ ନାଶା କର୍ଣ୍ଣ ହସ୍ତ ପଦହୀନ

ସ୍ମର କୋଟି ନୁହେ ତେବେ ଶୋଭାକୁ ସମାନ ।"

ସୁଭଦ୍ରାଙ୍କ ଶୋଭା ବର୍ଣ୍ଣନାରେ କବି ନିଜର କଳ୍ପନା ବିଳାସ ଓ ଚମତ୍କାର ରସ ଓ ଶୈଳୀର ବ୍ୟବହାର କରି କାବ୍ୟକୁ ସରସ ସୁନ୍ଦର କରିଛନ୍ତି ।

"ଶ ସୁର ଯାର ଶିରି ରାଜ ସେ ମାତ୍ର - ଶ୍ରବଣରେ ଶଙ୍କା ଲଭିଲେ ।
ସୀମାନ୍ତେ ତମ ପରିପନ୍ଥି କମ୍ପିତ ତମରୁ ତମ୍ବରୁ ଥରିଲେ
ସର୍ପ ପୁରେ ଯାଇ ପର୍ବତ କହିଲ ମହିଜାତ ହେମ ମଞ୍ଜରୀ
ସୁଗନ୍ଧବତୀ ସଇଛାରେ ଚାଳିତ ପତ୍ରାବଳୀରେ କି ମାଧୁରୀ
ସଫୁଲ୍ଲ ତହିଁ ପୁଣି ଫୁଲ୍ଲ ଏତକ
ସରୋରୁହ ଚମ୍ପା କୁମୁଦ ପାଟଳ ନିଆଳି ଶିରିଷ ଅଶୋକ ।"

ଯମକ ପ୍ରୟୋଗରେ -

"ସୁରଭି ସୁରଭି ଆଶ୍ରିତ ଯହିଁ ଲବଙ୍ଗ ଲତା
ସୁନାରୀ ସୁନାରୀ ପରାଏ ଧବ ଅଶ୍ରତେ ସ୍ଥିତା
ସରଳ ସରଳ ହୃଦୟ ତହୁଁ ନିର୍ଯ୍ୟାସ ଜାତ
ସ୍ୟନ୍ଦନ ସ୍ୟନ୍ଦନ ପରାଏ ରଥାଙ୍ଗରେ ଶୋଭିତ ।"

ଏହି କାବ୍ୟରେ ଅଳଙ୍କାର ବିଶେଷ ପ୍ରୟୋଗ ହୋଇଛି । ଏଥିରେ ଶ୍ରୀକୃଷ୍ଣ ଓ ସତ୍ୟଭାମାଙ୍କ ବର୍ଣ୍ଣନା ମଧ ରହିଛି ।

## ପ୍ରେମ ସୁଧାନିଧି

ପ୍ରେମ ଓ ପ୍ରଣୟକୁ ମୂର୍ତ୍ତିମନ୍ତ କଲା ପରି ମନୋଜ୍ଞରସ ସଂଯୋଜନାରେ ବିଚିତ୍ର ପଦ ବିନ୍ୟାସ ସହ ବିଭିନ୍ନ ଅଳଙ୍କାରର ଚାଟୁଳ ପ୍ରୟୋଗ କରି କବି ନାୟିକା ନାମାନୁସାରେ ପ୍ରେମ ସୁଧାନିଧି କାବ୍ୟ କାଳ୍ପନିକ କାହାଣୀକୁ ଆଧାର କରି ରଚନା କରିଛନ୍ତି ।

ନାୟକର ଚିତ୍ରପଟ୍ଟ ଦେଖି ବିଭିନ୍ନ ରାଜ୍ୟରେ ନାରୀମାନଙ୍କ ମନ ଭାବକୁ କବି ତାଙ୍କର ମନୋରମ ଅଳଙ୍କାର ପ୍ରୟୋଗ କରି ଉପସ୍ଥାପନା କରିଛନ୍ତି ।

"ମାଳବରେ ମାଳବରେ ନାରୀ କହିଲେ
ଅଙ୍ଗ ଅଙ୍ଗନା ଚିତ୍ତେ ଆୟତ ନୋହିଲେ ।
ବିଦେହେ ବିଦେ ହେ ଯେତେ ଯୋଗା ତରିଲେ
କୁନ୍ତଳେ କୁନ୍ତଳେ ରାମା ପଟ ଧଇଲେ
ଚୋଳେ ଚୋଳେ ଅନାଦରେ ଭିରୁ ଭିଡିଲେ ।"

ନାୟିକାର ଅଙ୍ଗ ସୁଷମାକୁ ଉପେନ୍ଦ୍ର ଅଦ୍ଭୁତୋପମାରେ ପ୍ରକାଶ କରି ନିଜର ବଳିଷ୍ଠ ପ୍ରତିଭାର ପ୍ରତିଭାର କରାଇଛନ୍ତି ।

"ସର୍ବ ମତରେ ସନମତ ଏ ମନ୍ତ ପର୍ବତ ପରେ ଜାତ ଲତା
ଲତାରୁ ଏବେ ପର୍ବତ ଜାତ ହେଲା ।
ଚାହିଁ କମ୍ପିବେ ଉର୍ଦ୍ଧରେତା
ହାହା ଶୋଭିତା ଦେଖିକେ ନୋହିବ ଲୋଭିତା
କରି ପରେ ହରି ହରି ପରେ କରି ଚଢାଇଲା ଏବେ ବନିତା ।"

ସର୍ବ ଜନ ପ୍ରଶଂସିତ, ସର୍ବ ମୁଖରେ ଶୋଭିତ, ଗାୟକମାନଙ୍କ କଣ୍ଠ ଭୂଷଣ ପଦଟିଏ ଏଠାରେ ତାଙ୍କର ଭାଷାର କାନ୍ତ, କୋମଳ ସରଳ ମଧୁର ବର୍ଣ୍ଣନାର ଏକ ଉଦାହରଣ ।

"ରସିକ ବିଚାର କରେ ଦୀପ ଦାନ କାର୍ତ୍ତିକରେ
ପ୍ରୟାଗ ସ୍ନାନ ମକରେ ଯେହୁ ନକରେ
ମିଶିକି ସେ ଆଲୋକରେ ଉତ୍ତମ ରାମା ଅଙ୍କରେ
ଘେନି ବସେ ପଲଙ୍କରେ କି ହିମ କରେ
ପୂର୍ବେ ସେବି ଥିଲେ ଶଙ୍କରେ
ସେ ଫଳୁଁ ଧରି ଉରଜ ଶ୍ରୀଫଳ କରେ ।"

ସେହିପରି ଆଉ ଗୋଟିଏ ଜନପ୍ରିୟ ଗୀତର ଉଦାହରଣ -

"ନିର୍ମଳ ଚନ୍ଦ୍ର ମଣ୍ଡଳ ଶରଦେ ବିରାଜି
ଦିଶେ ଯଥା ଦର୍ପକ ଦର୍ପଣ ଥିଲେ ମାଜି
ଚାହିଁ କୁମର କାତର

ଲେଖି ଆରମ୍ଭିଲା ବସି ବିନୟ ପତର ।

x x x x x

ଦୂରେ ଥିଲେ ପାଶେ ଅଛି ଏହାଥିବୁ ଘେନି
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର,
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।"

ପ୍ରେମ ସୁଧାନିଧି କାବ୍ୟରେ ଉପେନ୍ଦ୍ର ଭଞ୍ଜ ନିଜର ପରାକାଷ୍ଠାର ଚମତ୍କାର ଦେଖାଇ ପ୍ରେମର ମନ୍ଦାକିନୀ ଧାରାକୁ ରସସିକ୍ତ କରି ପ୍ରେମିକ-ପ୍ରେମିକା ତଥା ଭାବୁକଙ୍କୁ ସେହି ଧାରାରେ ପ୍ଲାବିତ କରିଛନ୍ତି ।

## ଅବନାରସ ତରଙ୍ଗ

ଏହି କାବ୍ୟ ରାବଣ ଭଗ୍ନି ସୂପର୍ଣ୍ଣଖାର ରାମଚନ୍ଦ୍ରଙ୍କ ନିକଟରେ ପ୍ରଣୟ ଭିକ୍ଷାଠାରୁ ଆରମ୍ଭ ହୋଇ ଶ୍ରୀରାମଙ୍କ ଅଭିଷେକ ଉତ୍ସବରେ ଶେଷ ହୋଇଛି । ଏହି କାବ୍ୟରେ ବନାର ବ୍ୟବହାର ହୋଇନାହିଁ । ଏପରି କଷ୍ଟ ସାଧଚେଷ୍ଟା ଯେ କେତେ ବିରଳ ସୃଷ୍ଟି କବି ଓ ବିଜ୍ଞ ସମାଜ ହୃଦୟଙ୍ଗମ କରି ପାରୁଥିବେ । ପ୍ରାରମ୍ଭରେ କବି ଲେଖିଛନ୍ତି -

"ଜୟ ଉକତ ବତ୍ସଳ ଜଗତ ଈଶ୍ୱର
ଦଶରଥ ନନ୍ଦନ ବନ୍ଦନ ଜନଙ୍କର
ବରଧନ ଅନନ୍ତ ଯଶ ଏ ଜଗତର
ବରଧନ ଅନନ୍ତ ସହଜ ଭକତର ।"

ବର୍ଷାକାଳରେ ପ୍ରଭୁ ଶ୍ରୀରାମଙ୍କ ସୀତା ବିଚ୍ଛେଦ ଜନିତ ବିହର ଭାବକୁ କବି ବର୍ଣ୍ଣନା କରିଛନ୍ତି -

"ମଦନ ଗଜ ମଥନ ଯତନ ହତଅପଘନ ଜନକ
ଇଛନ୍ନ ଦରଶ ପରଣ ହତଳ ସମ ଶଶଧର ସହଜ
ଜଳଦ, ଏ ଘନ ସମୟ ଅସର ।
ମମ ଲପନ ଦରଶନ ସୂପନ ଜଟବତ କର କବର ।"

ଏହି କାବ୍ୟଟି ବିଷୟ ବସ୍ତୁ ତୁଳନାରେ ବିରହ ବର୍ଣ୍ଣନାର ଚିତ୍ର ଅଧିକ ମାତ୍ରାରେ ସ୍ଥାନ ପାଇଛି ।

## ରସିକ ହାରାବାଳୀ

ଏହି କାବ୍ୟରେ ରୀତି ଯୁଗୀୟ କ୍ଳିଷ୍ଟତା ନାହିଁ। ଏଥରରେ ସରଳ, କୋମଳ, ମଧୁର ପଦାବଳୀର ସନ୍ନିବେଶ ଘଟିଛି । ଏହା ଏକ କାଳ୍ପନିକ କାବ୍ୟ । ଶ୍ରୀକ୍ଷେତ୍ର ଜାତ ଗନ୍ଧର୍ବ କନ୍ୟା ରସିକ ହାରାବଳୀ ସହ କୋଶଳ ରାଜକୁମାରଙ୍କ ପ୍ରଣୟ ଏଥିରେ ବର୍ଣ୍ଣନା କରାଯାଇଛି । ପ୍ରାରମ୍ଭ ବନ୍ଦନାରୁ ଏହି କାବ୍ୟର ସରଳ ଓ ସରସ ବର୍ଣ୍ଣନାର ରୂପର ଅଭାସ ଆମକୁ ମିଳି ପାରିବ ।

"ଜୟ ଜୟ ଜଗନ୍ନାଥ ଦାରୁ ରୂପଧାରୀ
ନୀଳଗିରିଶ ଗିରିଶ ବନ୍ଦନୀୟ ହରି ।
ମହାବଳବାନ ଅବରଜ ଉଦ୍ରାରାଜ ।
ଗରୁଡାସନ ସନକ ପୂଜ୍ୟ ଚତୁର୍ଭୁଜ
ନିରଦ ସୁନ୍ଦର ଦର ହର ହରଷଦ
ଶମନ ମନରେ ଜାର କର ମହା ଖେଦ ।"

## ଚିତ୍ର ଲେଖା

ଓଡିଆ ସାହିତ୍ୟର ବିଦ୍ୱାନ ସମଲୋଚକଙ୍କ ମତରେ ଏହା ତାଙ୍କର ପ୍ରାରମ୍ଭିକ ରଚନା । ୨୧ଟି ଛାନ୍ଦରେ ଏହି କାଳ୍ପନିକ କାବ୍ୟ ରଚିତ ହୋଇଛି । ଶୃଙ୍ଗାର ରସ ପ୍ରଧାନ ଏହି କାବ୍ୟରେ ସମ୍ଭୋଗର ସମସ୍ତ ଦିଗ ଏଥିରେ ବର୍ଣ୍ଣିତ ହୋଇଛି । ଅନ୍ୟାନ୍ୟ ଲେଖା ମଧରେ ରାମ କଥା ସମ୍ଭୂଜିତ    ରାମ ଲୀଳା ମୃତ କୃଷ୍ଣ କଥା ଆଧାରିତ   ଛାନ୍ଦ ଭୂଷଣ   କୁଞ୍ଜ ବିହାର ରସ ପଞ୍ଚକ ୫ ଟି ଅକ୍ଷରକୁ ଅଦ୍ୟ ଅନୁପ୍ରାସରେ ସଜାଇ ୫ ଟି ଛାନ୍ଦରେ ଲିଖିତ ଆଳଙ୍କାରିକ କାବ୍ୟ, ଚିତ୍ରକାବ୍ୟ ବନ୍ଧୋଦୟ, ଅଭିଧାନ ଗ୍ରନ୍ଥ ରୂପେ ଗୀତାଭିଧାନ ଲେଖି ଓଡିଆ ସାହିତ୍ୟ ଭଣ୍ଡାରକୁ ଅମୂଲ୍ୟ ରତ୍ନ ମାନ ଉପହାର ଦେଇଛନ୍ତି । ଏ ପର୍ଯ୍ୟନ୍ତ କବିଙ୍କ କେତେକ ଗ୍ରନ୍ଥର ପ୍ରକାଶ ହୋଇପାରିନି ଏବଂ କେତେକ ମଧ ଉପଲବ୍ଧ ହେଉନାହିଁ ।

# କବିଙ୍କ ଆଧ୍ୟାତ୍ମିକତା ଓ ଚରିତ୍ର

ନିଜର ଲେଖନୀରୁ ଆଧ୍ୟାତ୍ମିକତା ଓ ଭକ୍ତିଭାବର ବର୍ଣ୍ଣନାରେ ଉପେନ୍ଦ୍ର ଅନ୍ୟଭକ୍ତ କବିଙ୍କ ଠାରୁ ନ୍ୟୂନ ନୁହନ୍ତି । ନିଜର ଜ୍ଞାନ ଓ କର୍ମ ସହ ଈଶ୍ୱର ଅନୁକମ୍ପାକୁ ପାଥେୟ କରି ନିଜର ସୃଷ୍ଟି ସମ୍ଭାରକୁ ସମୁଚିତ ମାର୍ଗରେ ପରିଚାଳନା କରିଛନ୍ତି । ଉପେନ୍ଦ୍ରଙ୍କ ପରିକଳ୍ପନା ବିଳାସ ମାର୍ଜିତ ରୁଚି ସମ୍ପନ୍ନ ଭାବରେ ହୋଇଛି ତାଙ୍କର ରଚନା ବଳୀର ପ୍ରତି ପର୍ଯ୍ୟାୟରେ । ତାଙ୍କ ଦିବ୍ୟ ଦର୍ଶିତାର ମହିୟସୀ ଶକ୍ତି ନୈସର୍ଗିକ ରିତୀରେ ତାଙ୍କୁ ଦେଇଛି ଅଦ୍ଭୁତ ପ୍ରେରଣା । ଏହି ଭାବନା ନିଶ୍ଚିତ ଭାବରେ ବ୍ରହ୍ମଭାବମୟୀ ପରି ପ୍ରେରଣା ହିଁ ଶାଶ୍ୱତ ଭାବଧାରା ସମ୍ବଳିତ ହୋଇ ଦେଦୀପ୍ୟମାନ ହୋଇ ଉଠିଛି । ଏହି ମହନୀୟ ପ୍ରେରଣା ତାଙ୍କୁ ରାମତାରକା ମନ୍ତ୍ରସିଦ୍ଧି କରିବା ଦିଗରେ ସହାୟକ ହୋଇଛି । ଏହି ଶକ୍ତିବଳରେ ତାଙ୍କର ଅନ୍ତର ପରିପୂର୍ଣ୍ଣ ହୋଇ ଉଠିଛି ରାମମୟ ରୂପରେ । ଜୀବନଧାରାର ବାଧା ବିଘ୍ନ ଶୋକ ସନ୍ତାପ ସବୁକୁ ଭୁଲି ଶ୍ରଦ୍ଧାଭକ୍ତି ଦୃଢ ବିଶ୍ୱାସ ବଳରେ ନିଜକୁ ରାମୋପାସନାରେ ହଜାଇ ଦେଇଛନ୍ତି । ବୈଦେହୀଶ ବିଳାସ କାବ୍ୟର ପ୍ରତି ଛତ୍ରରେ ପ୍ରଭୁ ରଘୁନାଥଙ୍କ ସ୍ୱର୍ଗୀୟ ଇଙ୍ଗିତରେ ସତେ ଯେପରି ସେ ପରଂବ୍ରହ୍ମ ରାମଙ୍କୁ ଭବ୍ୟାତି ଭବ୍ୟ ସରସ ସୁନ୍ଦର କରି ଉପସ୍ଥାପନା କରିଛନ୍ତି ।

କବିଙ୍କ ସୃଷ୍ଟି ରାମମୟ ଅର୍ଥାତ୍ ରାମ ରାଜ୍ୟର ତୁଳନା ନଥିଲା ପରି ତାଙ୍କର ସାହିତ୍ୟ ସୃଷ୍ଟି ସର୍ବବିଧ, ସର୍ବଶ୍ରେଷ୍ଠ ମହନୀୟତାର ଶେଷ ବିକାଶର ଓଡିଆ ସାହିତ୍ୟର ସମୟ ଆସିଥିଲା । କବି କେବଳ ରାମଙ୍କ ଭକ୍ତି ରସର ବର୍ଣ୍ଣନା କରିନାହାନ୍ତି ତତ ସହିତ ଶିବ, ବିଷ୍ଣୁ, ଗଣେଶ, ସୂର୍ଯ୍ୟ, ଦୁର୍ଗା, ନୃସିଂହଙ୍କ ପ୍ରତି ତାଙ୍କର ଭକ୍ତି ଭାବକୁ ବର୍ଣ୍ଣନା କରିବାରେ କୁଣ୍ଠା ପ୍ରକାଶ କରିନାହାନ୍ତି । ଓଡିଆ ରୂପେ ଜଗତ ନାଥ ଜଗନ୍ନାଥଙ୍କ ପ୍ରତି ଅପାର ସ୍ନେହ, ଶ୍ରଦ୍ଧା, ଭକ୍ତି ସବୁ ସମର୍ପଣ କରି ନିଜକୁ ଧନ୍ୟ ମନେ କରିଛନ୍ତି ।

ଭଞ୍ଜ ବଂଶୀୟ ରାଜାମାନଙ୍କ ଗୁରୁ ହେଉଛନ୍ତି ତାମିଲ ସଂପ୍ରଦାୟ ବ୍ରାହ୍ମଣ । ପୂର୍ବରୁ ଭଞ୍ଜ ବଂଶର ଜଣେ ରାଜା ଏକ ବ୍ରାହ୍ମଣ ବାଳକକୁ ଗୁପ୍ତରେ ହତ୍ୟା କରିଥିଲେ । ସେ ଗୋଦାବରୀ ସ୍ନାନକୁ ଯିବା ବେଳେ ତାଙ୍କୁ ଅତ୍ୟନ୍ତ ବିଦ୍ୱାନ ତ୍ରୀକାଳଦର୍ଶୀ ବ୍ରାହ୍ମଣଙ୍କ ସନ୍ଧାନ ମିଳିଲା । ରାଜା ସେହି ବିଦ୍ୱାନଙ୍କ ଦର୍ଶନକୁ ଯିବା ବେଳେ ସେ ବ୍ରହ୍ମ ହତ୍ୟାକାରୀ ରାଜାକୁ ଦର୍ଶନ ଦେବେ ନାହିଁ ବୋଲି କହିଲେ । ରାଜା ତାଙ୍କର ଏ ଗୁପ୍ତ ତଥା କିପରି ଜାଣିଲେ ଭାବି ଆଶ୍ଚର୍ଯ୍ୟ ହେଲେ ଓ ବହୁ ବିନୟ ହୋଇ ପ୍ରାୟଶ୍ଚିତର ମାର୍ଗ ପାଇଁ ପ୍ରାର୍ଥନା କରନ୍ତେ ନାରାୟଣଙ୍କ ପୂଜା ବ୍ୟବସ୍ଥା ପାଇଁ ବ୍ରହ୍ମଣ ଆଦେଶ ଦେଲେ । ଫଳରେ କୁଳାଡର ଅପାର ପାର୍ଶ୍ୱରେ ବଡ ନଦୀର ପୂର୍ବ ତଟରେ ନାରାୟଣଙ୍କ ଭବ୍ୟ ମନ୍ଦିର ନିର୍ମାଣ କରାଇ ସେଥିରେ କୃଷ୍ଣ ପ୍ରସ୍ତରରେ ନାରାୟଣଙ୍କ କମନୀୟ ମୂର୍ତ୍ତି ସ୍ଥାପନ କରିଥିଲେ । ମନ୍ଦିର ପରିଚାଳନା ପାଇଁ ୧୨ କୋଶ ବା ପ୍ରାୟ ୩୬ କି.ମି. ବ୍ୟାପି ଉତ୍କୃଷ୍ଟ ଭୂମି ଦାନ କରିଥିଲେ । ସେହି ତାମିଲ ବୃଦ୍ଧ ବ୍ରାହ୍ମଣ ନାରାୟଣଙ୍କ ପ୍ରାଣ ପ୍ରତିଷ୍ଠା କରିଥିଲେ । ସେହି ବ୍ରାହ୍ମଣ ବୈଷ୍ଣବ ସଂପ୍ରଦାୟର ଥିଲେ । ସେମାନେ ରାମ ଭକ୍ତ ଥିଲେ । ସେହି ବ୍ରାହ୍ମଣ ଓ ପରେ ତାଙ୍କ ବଂଶଧର ଗଣ ଭଞ୍ଜ ବଂଶର କୁଳ ଗୁରୁ ଥିଲେ । ସେମାନଙ୍କୁ ଗୁରୁ ଗୋସେଇଁ କୁହାଯାଏ । ନାରାୟଣ ପାଟଣାରେ ଥିବା ରଘୁନାଥ ମଠ ଗୋସେଇଁ ମାନଙ୍କ ମନ୍ଦିର । ରାଜା ଗୁରୁ ଗୋସେଇଁଙ୍କ ପାଇଁ ବିସ୍ତର ଭୂସମ୍ପତ୍ତି ଖଞ୍ଜିଥିଲେ । କୁଳାଡର ବିଭିନ୍ନ ଧାର୍ମିକ କାର୍ଯ୍ୟରେ ଗୁରୁଗୋସେଇଁ ଉପସ୍ଥିତି ନିହାତି ଆବଶ୍ୟକ ହୁଏ । ଏବେ ମଧ ସେମାନଙ୍କ ବଂଶଧର ଗଣ ବେଲଗୁଣ୍ଠା ନିକଟବର୍ତ୍ତି କୋକ ଲୁଣ୍ଠା ଗ୍ରାମରେ ବାସ କରନ୍ତି । ସେମାନେ ଆୟାଙ୍ଗର ସଜ୍ଞା ଧାରୀ । ଭଞ୍ଜ ସନ୍ୟ ।ସୀଙ୍କ ଠାରୁ ରାମତାରକ ମନ୍ତ୍ର ନେଇଥିଲେ ମଧ କୁଳଗୁରୁ ଗୋସେଇଁଙ୍କ ପ୍ରଭାବ ମଧ ରଘୁନାଥଙ୍କ ପ୍ରତି ଭକ୍ତି ଭାବ ପିଲାଦିନୁ ତାଙ୍କ ଉପରେ ପଡିଥିଲା । କବି ରାମଙ୍କୁ ପରଂବ୍ରହ୍ମ ରୂପେ ଉପାସନା କରୁଥିଲେ । କବିଙ୍କ ଭାଷାରେ –

"କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ ।"

ସୁବର୍ଣ୍ଣରେଖା କାବ୍ୟରେ କବିଙ୍କ ରାମ ସ୍ତୁତି ପ୍ରଣିଧାନ ଯୋଗ୍ୟ ।

ଜୟ ଜୟ ରାମଚନ୍ଦ୍ର ଅସୁର କୁଳ ପାରିନ୍ଦ୍ର

ସୀତା ହୃଦୟ ଚନ୍ଦନ ଜଗବନ୍ଦନ ଯେ
ନବୀନ ନୀରଦ ଶ୍ୟାମ କାମଜିତ ଅଭିରାମ
ଭକତି ମୁକତି ଧାମ ଅନୁପମ ଯେ
ଉପଇନ୍ଦ୍ର ବୀରବର ମାଗଇ ଯୋଡ଼ିଣ କର
କହିବି ରାମ ଚରିତ କରିଣ ଗୀତଯେ ।

ସେହିପରି ପ୍ରେମ ସୁଧାନିଧି କାବ୍ୟରେ ଅଦ୍ୟ ଯମକରେ ଲିଖିତ ପ୍ରଭୁ ରାମଚନ୍ଦ୍ରଙ୍କ ବନ୍ଦନା -

"କୁମୁଦ କୁମୁଦ ବନ୍ଧୁ ଯଶ ଉଦିତ
ଜନକ ଜନକ ତୋଷ କର ବଜିତ ।
ଅନନ୍ତ ଅନନ୍ତ ଯାହା ମହିମା ମାନ
ଜଗତି ଜଗତି ପରେ ଲିଳା ରଚନ
ସୀତା ସୀତାମ୍ବୁଜ ମୁଖ ମତ୍ତ ଭ୍ରମର ।
ରାମ ରାମ କଦଳୀ କମ୍ପିନେ ଶରୀର
ଲକ୍ଷ୍ମଣ ଲକ୍ଷ୍ମଣ ଯା ପାଦେ ସେବେ
ଭଞ୍ଜ ଭଞ୍ଜ ବୀରବର ସନ୍ତପ ଏବେ ।
ଉଜ୍ଜ୍ୱଳ ଉଜ୍ଜ୍ୱଳ ରସେ ପ୍ରତି ହୋଇବ
ମାନସ ମାନସ ହଂସ ପ୍ରାୟ କ୍ରିଡ଼ିବ ।"

ଓଡଗାଁରେ ପୂଜିତ ରାମ ଲକ୍ଷ୍ମଣ ସୀତାଙ୍କ ରୂପକୁ ଅବିକଳ ରୂପେ କବି ବର୍ଣ୍ଣନା କରିଛନ୍ତି ସର୍ବତ୍ର ରାମଚନ୍ଦ୍ର ନୀଳ କିନ୍ତୁ ଓଡଗାଁର ରଘୁନାଥଙ୍କ ବର୍ଣ୍ଣ ଗାଢ଼ ଶ୍ୟାମଳ ବା ସବୁଜ ରଙ୍ଗ । କବିଙ୍କ ବର୍ଣ୍ଣନାରେ -

ବାମେ ବାମାବରସ୍ଥିତି ଦକ୍ଷିଣେ ଲକ୍ଷ୍ମଣ ଯତି
ମଧ୍ୟେ ବିଜେ ଯେଉଁ ଶ୍ୟାମଳ ସୁନ୍ଦର
ତାଙ୍କୁ ଉପଇନ୍ଦ୍ର ଚିନ୍ତି ।

ରସ ପଞ୍ଚକରେ ନିଜ କାବ୍ୟ ଜନ ସମାଜରେ ବିସ୍ତାର ଲାଭ

ଉଦ୍ଦେଶ୍ୟରେ କବି ଇଷ୍ଟ ଦେବ ରାମଙ୍କୁ ସ୍ମରଣ କରିଛନ୍ତି ।

ରାଘବ କୋଶଳ ଇଶ ସୀତା ପ୍ରାଣବନ୍ଧୁ
ରାକ୍ଷସ କୁଳ କୋମଳ ସୁଖହର ବନ୍ଧୁ ।
ରସି କହେ ଉପଇନ୍ଦ୍ର ଭଞ୍ଜ ବୀରବର
ରାଜେ ରାଜ୍ୟେ ଯାଉଁ ଗୀତ ଏହି ଆଜ୍ଞାକର ।

ପ୍ରତିଛାନ୍ଦର ପ୍ରାନ୍ତରେ ଓ ପ୍ରତି କାବ୍ୟର ପ୍ରାରମ୍ଭରେ ରାମଚନ୍ଦ୍ର ସ୍ତୁତିରେ କବି ନିଜର ଲେଖନୀ ଧନ୍ୟ କରିଛନ୍ତି ।

ହେ ରାମ କୃଷ୍ଣ ସୁନ୍ଦର କଳାପ ମଦନ
ରାଧାପତି ରୁଚି ହାସ ଅଘ ବିନାଶନ ।
ଉପଇନ୍ଦ୍ର ଭଞ୍ଜ ବୀରବର ମନୋରଥ
ଏ ଗୀତ ପୂର୍ଣ୍ଣ ହେବାର କର ଏହା ସାର୍ଥ ଯେ ।

ଲାବଣ୍ୟବତୀ କାବ୍ୟର ତ୍ରୀଂଶ ଛାନ୍ଦ ଶେଷରେ ସ୍ତୁତି କରିଛନ୍ତି ।

କହେ କବି ଭଞ୍ଜ ବୀରବର ଦିବ୍ୟରସ
ଆହେ ରାମ ଅବିଘ୍ନେ ଏ ଗୀତ କର ଶେଷ ।
ସୀତା ସହିତ ମୋ ଚିତ୍ତୁ ନୋହିବ ଅନ୍ତର
ଅଭିଷ୍ଟଙ୍କୁ ମୁହିଁ କରିଅଛି ନରନ୍ତର ହେ ।

ଲାବଣ୍ୟବତୀର ୪୫ ତମ ଛାନ୍ଦରେ ସ୍ତୁତି କରିଛନ୍ତି -

"ଜରତ ବିମ୍ବ ଅଧର ଉରତ ଜେଷ୍ଠ ସୋଦର
ନିରତେ ମୋ ଚିତ୍ତେ କର ସଦ୍ମହେ
କହେ ଉପଇନ୍ଦ୍ର ଭଞ୍ଜ ପ୍ରଭୂ ରଘୁବଂଶ ରାଜ
ଅଯୋଦ୍ଧା ରାଜନ ପରଂବ୍ରହ୍ମ ହେ ।"

ଗୋସ୍ୱାମୀ ତୁଳସୀ ଦାସଙ୍କ ପରି ଉପେନ୍ଦ୍ର ଶ୍ରୀରାମଙ୍କୁ ପରଂବ୍ରହ୍ମ ରୂପେ ଉପାସନା କରୁଥିଲେ ।

କ୍ଷେତ୍ର ଶ୍ରୀ ପୁରୁଷୋତ୍ତମ ରାଜାଶ୍ରୀ ପୁରୁଷୋତ୍ତମଙ୍କ ଗୁଣ କିର୍ତ୍ତନରେ ଶତମୁଖି ହୋଇଛନ୍ତି । ଜଗନ୍ନାଥ ହେଉଛନ୍ତି ଉତ୍କଳର ଇଷ୍ଟ ଦେବତା । ଗଜପତି ପରିବାର ସହ ଭଞ୍ଜ ପରିବାର ସମ୍ପର୍କ ଥିବା ଯୋଗୁଁ ସେ ବହୁବାର ଶ୍ରୀକ୍ଷେତ୍ରରେ ଅବସ୍ଥାନ କରି ବିଭିନ୍ନ ରୀତି ନୀତିର ଅନୁଧ୍ୟାନ କରିଥିଲେ । ଅନିର୍ବଚନୀୟ ରୂପେ ସେ ନିଳାଦ୍ରୀନାଥ ଜଗଦିଶ୍ୱର ଜଗନ୍ନାଥଙ୍କ ପାଖରେ ଭକ୍ତି ରସର ଧାରାରେ ଗଙ୍ଗାଙ୍କୁ ପ୍ରବାହ ମାନ କରାଇଛନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ଲେଖିଛନ୍ତି -

"ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ
ଚାରି ବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ।
ମୁକ୍ତ ଦେବା ଗୁପ୍ତ ହୋଇ ଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବିହୁନେ କେହୁ ବୁଝିବ ସଂସାରେ ।"

ପରମ ପାବନ ତୀର୍ଥରାଜ ଶ୍ରୀକ୍ଷେତ୍ର ପୁରୀର ବର୍ଣ୍ଣନ କରିବାକୁ ଯାଇ ଲେଖିଛନ୍ତି -

"ଯେବଣ କଟକ ଛଟକେ ବିରାଟ କେ ମୁକତି
ମହା ପ୍ରସାଦରେ ସାଦରେ ଜନମାନେ ଲଭନ୍ତି ।
ଅଳପ କଳପ ବଟର ଯହିଁ ଛାୟା ଆଶ୍ରିତ
କଳପ କଳପ ନର କିନ୍ନର ତରିଲା ମତ ।
ବିନା ତୃଷାତୁରେ ଚତୁରେ କୁଣ୍ଡ ପତନ ତହିଁ
କାକର ହେଲା ଭୁଜ ଚାରି କିସ ବିଚାର ତହିଁ ।
ପତକା ଅଞ୍ଚଳ ଚଞ୍ଚଳ ଡାକେ ପାପୀଙ୍କି ଅବା
ଏ ନୀଳ ନଗ ନଗରୀକୁ ଆସ ଭଲ କରିବା ।
ଯେତେ ଦୂରେ ଘଣ୍ଟ ନିନାଦ ଶୁଭେ ନ ଦରେ ନେଇ
ପକାଏ ଅନୃତ ଦୁଷ୍କୃତ ଗଳେ ଖଳଥା ଦେଇ ।
ସୁମନାଏ ମନେ ଇଛନ୍ତି ତହିଁ ବେତ୍ରା ଘାତକୁ
ଗମନରେ ନରେ ତେଜନ୍ତି ସମନର ଭୟକୁ ।

ମହା ମହିମାମୟୀ ପୁରୀ ଧାମର ବର୍ଣ୍ଣନା ତାଙ୍କର ଶ୍ରେଷ୍ଠ କାବ୍ୟ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ କରିଛନ୍ତି ।

ଶୁଣ କୋବିନ୍ଦେ ଭାରତ ଖଣ୍ଡେ ପୂଣ୍ୟ ଧାମ
ଯେଣୁ ନାରାୟଣ ଦେହି ତେଣୁ ସେହି ନାମ ।
ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ
ସାକ୍ଷୀ ପକ୍ଷୀ କରଟ ପ୍ରତିମା ମାନ ଥୋଇ ।
ସେ ବ୍ରହ୍ମ ହତ୍ୟା ପାତକ ନିପାତକ ମହି
କପାଳ ମୋଚନ ତ୍ରିଲୋଚନ ସାକ୍ଷୀ ତହିଁ ।
ଆସି କାଶିଶ୍ୱର ବାସ କଲେ ତାହା ଜାଣି
ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକ ମଣି ।
ଏଣୁ କ୍ଷେତ୍ର ନରେନ୍ଦ୍ର ପଦତ ସମ୍ଭାବିତ,
ବିନାଶ ଭୁଜଙ୍ଗ ଦୋଷ ତାକୁ କେତେ ମାତ୍ର ।
ଅବିଦ୍ୟା ବିଷମ ଅଶୀଘାତ ଜନେ,
ଜ୍ଞାନାଞ୍ଜନେ ପରାଧିନେ ସେ ସ୍ଥାନ ଗମନେ ।
ଶ୍ରୀମହାପ୍ରସାଦ ଗଦ ପଦ ଘଣ୍ଟ ଘୋଷ,
ଭକ୍ଷଣେ ଶ୍ରବଣେ ସେ କିଳବିଷ ବିଷ ନାଶ ।
ଉନ୍ନତ ପ୍ରାସାଦ ରାଜ ପତକା ଉଡାଇ
ଏ ପ୍ରଦେଶ ସମବର୍ତ୍ତି ପଣ ନାହିଁ କାହିଁ ।
ବଟ ରାଜ, ଶାଖା ଘେନି ନିଗମ ସାକ୍ଷାତ,
ପାପ ତାପ ପଶୁ ନାଶ ସୁକର୍ମ ଉଦିତ ।
ସେ ଦୁର୍ଗ-ପରୀଖ ତ୍ରୀର୍ଥ ରାଜ ଗର୍ଜନରେ
କହେ ଅବଗାହ ପାପ ବ୍ୟୁହ ଦହନରେ ।
ଦହି ସବୁ ବାଡବରେ ଦେବ ଏ ପାକାଇ,
ଏଦର ବଶରୁ ଦୂର ଦୁରିତ ପଳାଇ ।"

ମର୍ତ୍ତ୍ୟ ବୈକୁଣ୍ଠ ସ୍ୱରୂପ ଶଙ୍ଖ କ୍ଷେତ୍ରର ରାଜାଧିରାଜ ନୀଳାଦ୍ରିଶ ଜଗତପ୍ରଭୂ ଜଗଦୀଶ୍ୱର ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥଙ୍କ ମହିମା ଓ ରୂପ ମାଧୂରୀ ମାଧୁର୍ଯ୍ୟ ବର୍ଣ୍ଣନା ବଳୀରେ ତାଙ୍କର ଲେଖନୀ ଚଞ୍ଚଳ ହୋଇ ଉଠିଛି ।

"କୋଟି କନ୍ଦର୍ପ ଲାବଣ୍ୟ ମୂର୍ତ୍ତି ଦରଶନ,
ଦେବାଙ୍କୁ ସୁବେଶ ବିଜେ ରତ୍ନ ସିଂହାସନ ।
ଶିରେ ହେମ ରତନ ମୁକୁଟ ପଞ୍ଚଶଖା
କରୁଣା ସିନ୍ଧୁରେ କି ବଡବା ନଳଶିଖା ।
କି ପାଇଁ ସାର୍ଥ ନୋହିବ ଏ ମନ୍ଦ ବିଚାର
ପୁଣି ମଞ୍ଜୁଳ କୁଣ୍ଡଳ ମକର ଆକାର ।
ପ୍ରବାଳ ତରଣୀ ଦୃଷ୍ଟି ରଙ୍ଗାଧରେ ଅଛି
ବିଶେଷ ଯହିଁ ଲାବଣ୍ୟ ଲକ୍ଷ୍ମୀ ସମ୍ଭବିଛି ।"

ଅନାଥର ନାଥ ନୀଳଗିରି ନାଥ ପତିତ ପାବନ ଜଗନ୍ନାଥଙ୍କ ଦୁଇଟି ଲୀଳା ପରମ ପାବନ କ୍ଷେତ୍ର ପୁରୀରେ ଅନୁଷ୍ଠିତ ହୁଏ । ତାହାକୁ ସ୍ୱୟଂ ଲୀଳା କୁହାଯାଏ । ଏହି ହେଉଛି ଶ୍ରୀବିଗ୍ରହ ମାନଙ୍କ ସ୍ନାନ ଯାତ୍ରା ଓ ଶ୍ରୀ ଗୁଣ୍ଡିଚା ଯାତ୍ରା । ଏହି ଉତ୍ସବରେ ଶ୍ରୀ ଦାରୁ ବିଗ୍ରହ ମାନଙ୍କୁ ରତ୍ନ ସିଂହାସନରୁ ପହଣ୍ଡିରେ ଉତ୍ସବ ସ୍ଥଳକୁ ଅଣାଯାଇ ପ୍ରଭୂଙ୍କୁ ଜନତାଙ୍କ ସହ ମିଶାଯାଇ ଲୀଳା ଉତ୍ସବ ଅନୁଷ୍ଠିତ ହୁଏ । ମୁଖ୍ୟ ପ୍ରତିଷ୍ଠିତ ବିଗ୍ରହ ସର୍ବ ସାଧାରଣଙ୍କ  ନିକଟକୁ ଆସି ଉତ୍ସବରେ ଯୋଗ ଦେବା ଅନ୍ୟତ୍ର ବିରଳ । ସେହି ଦେବ ଦୁର୍ଲଭ ବିରଳ ସ୍ନାନ ଯାତ୍ରାର ମହନୀୟ ଚିତାକର୍ଷକ ଲିଳାକୁ କବି ସମ୍ରାଟ ବର୍ଣ୍ଣନା କରିଛନ୍ତି ।

"ସ୍ନାନ ଗୁଣ୍ଡିଚାଏ ବେନି ସ୍ୱୟଂ ଲୀଳା ଯାର
ପତିତ ପାବନ ଅର୍ଥେ ପ୍ରାସାଦୁଁ ବାହାର ।
ଜ୍ୟେଷ୍ଠ ପୌର୍ଣ୍ଣମାସୀ ପୂର୍ବ ନିଶି ଅବଶେଷେ
ସେବକେ ଉତ୍ସକେ ନିଳି ମହା ପ୍ରଭୂପାଶେ ।
ସେକାଳକୁ ଅନୁସରୀ ଯାତ୍ରୀ ନରନାରୀ

ଯେ ଯାହାର ନିତ୍ୟ ଜର୍ମ ତୃଷା ହୋଇସାରି ।
ହରହରି ଦ୍ୱାରେ ମିଳି ହରିଧ୍ୱନୀ ଜଳେ
ହରିତ ପୂରିତ ତୁରିତରେ ତହିଁ ଦେଲେ ।
ନୋହିବେ ସର୍ବଜ୍ଞ ଜିହ୍ୱା ବ୍ରହ୍ମା ପରିବାର
ଜାଣିଲେ ନିଶ୍ଚୟ ପୂର୍ବ ଦକ୍ଷିଣ କୁଞ୍ଜର ।
ପ୍ରବିଜରେ ପୂର୍ବଗଜ ଭାବ ଉପୁଜାଇ
ପହଣ୍ଡି ବିଜୟଜଲେ ଝୁଲାଇ ଝୁଲାଇ ।
ଏମନ୍ତ ନୋହିଲେ କି ପ୍ରସାଦ ଦରୀ ତେଜି
ମଣ୍ଡପ ସର ଅବ ଗାହରେ ଚିତ୍ତ ମଜ୍ଜି ।
ସବୁଦିନେ ଲିଳା ସ୍ଥାନ ନୀଳ ମହୀଧର
ଭକ୍ତ ଭାବ ରଜ୍ଜୁରେ ବନ୍ଧନ ଅଛି ଯାର ।

ନୀଳାଦ୍ରୀଶ ଚଉତିଶାରେ କବି ଭକ୍ତି ଗଦ୍ ଗଦ୍ କଣ୍ଠରେ ନିଜର ହୃଦୟକୁ ଜଗନ୍ନାଥଙ୍କ ଚରଣାରବିନ୍ଦରେ ଢାଳି ଦେଇଛନ୍ତି -

"କରପତ୍ର ଯୋଡିଣ   କମ୍ବୁ ରାଜ୍ୟ ରାଜନ
କମଳାବର ସନ୍ନିଧାନେ
କି ବର୍ଣ୍ଣିବି ଭାବିତ   କଞ୍ଜସୁତ ଭାବିତ
ସେ କଞ୍ଜ ଚରଣ ଇକ୍ଷଣେ ହେ ନୀଳାଦ୍ରୀଶ
କହିତ କୁଟିଳ କରିଛ   ହରିତ ଚକ୍ର ବହିଅଛ
କମ୍ବୁନାଭି କୁଟିଳ ଭକ୍ତ ଜନେ ସରଳ
କରଟୁ ହୀନ କି କରିଛ, ହେ ନୀଳାଦ୍ରୀଶ ।"

ଭକ୍ତିରେ ବିଭୋର ହୋଇ କବି ଜଗନ୍ନାଥଙ୍କ ମହିମା ବର୍ଣ୍ଣନାରେ ଶତମୁଖ ହୋଇଛନ୍ତି ।

"ଛଟକରେ ଅକ୍ଷର   ଛଳରେ ଆଦିସ୍ୱର
ଫଣୀ ଶକୁଳ ହେଲେ ବର୍ଣ୍ଣ

ଛଟକାଙ୍ଗୀ ସେ ମାୟା 'ଉ' କାରେ ବହି କାୟା
କହନ୍ତି ବର୍ଣ୍ଣ ସେ ଅରୁଣ, ହେ ନୀଳାଦ୍ରୀଶ ।
ଛଦ୍ମେତ ବହିଅ ଛ ରୂପ 'ମ' କାର ବୀଜର ସ୍ୱରୂପ
ଛନ୍ଦ ପ୍ରଣବ ସାର ନିଗମର ବେଭାର
ଛନ୍ଦେ ବହିଲେ ଗୋପ୍ୟ ରୂପ, ହେ ନୀଳାଦ୍ରୀଶ ।"

କବି ଅତ୍ୟନ୍ତ ବିନୟୀ ଅଟନ୍ତି । ନିଜର ସେହି ମହନୀୟ ଗୁଣାଧିନ ହୋଇ ପତିତ ପାବନଙ୍କ ନିକଟରେ ନିଜକୁ ନିଜର ସର୍ବସ୍ୱକୁ ସମର୍ପଣ କରିଛନ୍ତି ତାର ଭାବ ବିହ୍ୱଳିତ ରସାଳ ପଦାବଳୀ -

"କ୍ଷମାନିଧିଙ୍କୁ ବାରେ କ୍ଷମ ମୁଁ ଦର୍ଶନରେ,
କ୍ଷିତି ଖ୍ୟାତି କି ସମର୍ପିଲି,
କ୍ଷମ ମୋ ଅପରାଧ, କ୍ଷମ ମୋ ଜୀବ ସାଧ,
କ୍ଷାତ ଚରଣ ତଳେ ଦେଲି ହେ ନିଳାଦ୍ରୀଶ ।
କ୍ଷୟତ ହେଲାଣି ଏ ପିଣ୍ଡ ଖ୍ୟାଳ ଏ ଜଞ୍ଜାଳର ଦଣ୍ଡ
ଖ୍ୟାତ ଏ ଉପେନ୍ଦ୍ରର ଭଞ୍ଜ କୁଳ ବେଭାର
ଚରଣ ତଳେ ହେଉ ଗୁଣ୍ଡ ହେ ନୀଳାଦ୍ରୀଶ ।"

ଆଉ ଏକ ସରଳ, ସୁନ୍ଦର, ଭାବଗର୍ଭକ ଜଣାଣ ଯାହା ବେତାର, ଦୂରଦର୍ଶନ, ଓଡିଶୀ ନୃତ୍ୟ ମାନଙ୍କରେ ଗାୟନ କରାଯାଏ ତଥା ଜନ ସମାଜରେ ଅତ୍ୟନ୍ତ ଲୋକପ୍ରିୟ, ତାହା ଉପେନ୍ଦ୍ର ଭଞ୍ଜଙ୍କ ପଦ ସରଳ ଧ୍ୱନିକୁ ପ୍ରମାଣିତ କରି ଜଗନ୍ନାଥଙ୍କ ପ୍ରତି ଥିବା ତାଙ୍କ ଭକ୍ତିଧାରାର ପରିସ୍ଫୁଟନ କରୁଛି ।

"ମାନ ଉଦ୍ଧାରଣ, କର ହେ କାରଣ, ଶରଣ ମୁଁ ତୁମ୍ଭ ପଦ ତଳେ
ଅନାଥର ନାଥ ନୀଳଗିରୀ ନାଥ ଜଗନ୍ନାଥ ନାମ ମହୀତଳେ ।।"

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କେବଳ ରାମ ଓ ଜଗନ୍ନାଥଙ୍କ ମହିମା ଗାନ କରି ନାହାନ୍ତି । ଆମ ସମାଜରେ ଲୋକଙ୍କ ଶ୍ରଦ୍ଧା ଓ ଭକ୍ତି କରୁଥିବା ଅନ୍ୟାନ୍ୟ ଦେବା ଦେବୀଙ୍କୁ ମଧ୍ୟ ସେ ତାଙ୍କର ଅମର ଲେଖନୀରେ ଭକ୍ତି ନିବେଦନ କରିଛନ୍ତି । ବୈଦେହୀଶ ବିଳାସ ପ୍ରାରମ୍ଭରେ ବିଷ୍ଣୁଙ୍କ ସହ ସୂର୍ଯ୍ୟଙ୍କୁ ମଧ୍ୟ ଆଳଙ୍କାରିକ

ରୀତିରେ ବର୍ଣ୍ଣନା କରିଛନ୍ତି ।

"ବନ୍ଦଇ ଦୀନ ବାନ୍ଧବ ହରି ଯେ ତମ ଚକ୍ର ନାଶ ଖଣ୍ଡନ କାରୀ
ସଦା କମଳାନନ୍ଦ ବିହାରୀ ସଭାବେ ଇନଯେ,
ବିଭୁ ଅନନ୍ତ ଅଙ୍କ ବିହାରୀ କର ପ୍ରତାପ ଯାର ସଞ୍ଚରୀ
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ ।
ବଇ ନୈତଯ୍ୟ ଯାହା ଅଗ୍ରତେ ସ୍ଥିତ
ବୈକୁଣ୍ଠ ପକ୍ଷକ ଲୋକ ତୋଷିତ ଯେ ।
ବିକାଶି ଅଖଣ୍ଡିତ ମଣ୍ଡଳେ, ସିଂହ ଭାବରେ କ୍ରୀଡିବ କାଳେ
ଭବେ ତରଣୀ ହୋଇ ମଞ୍ଜନେ, ଗିରି ଉଦିତ ଯେ ।"

ସେ ଲାବଣ୍ୟବତୀ କାବ୍ୟରେ ଭର୍ଗବୀର ମହାବିଷ୍ଣୁ ଜ୍ୱଳନ୍ତ ସର୍ବତୋ ମୁଖ ଭଗବାନ ନୃସିଂହ ଓ ରାମଙ୍କୁ ଅଭେଦ ସାମ୍ୟ ରୂପ ଦେଇ ବର୍ଣ୍ଣନା କରିଛନ୍ତି ।

"ହରିଣ୍ୟ ତନୁରେ ଯେ କ୍ଷତ କାରୀ
ଦାସ ବତ୍ସଳ ରାମ ନରହରୀ
ଧ୍ୟାନେ ଅର୍ଜିତ ଅଘ କରି ହତ
ଉପଇନ୍ଦ୍ର ବୀରବର ରଚିତ
ରସିକ ସିନ୍ଧୁକୁ ଚାନ୍ଦ ଯେ
କବି ଯେ ଜାଣିବ ଯେତେ ଶ୍ରମ ଅଛି
ଏବେଶ ପେଶଳ ଛାନ୍ଦ ଯେ ।।"

ଗୋଟିଏ ପଦରେ କବି ବିଷ୍ଣୁ, ରାମ ଓ ଶିବଙ୍କୁ ଚମତ୍କାର ରୂପେ ବନ୍ଦନ କରିଛନ୍ତି ତାର ଉଦାହରଣ -

"ଅନନ୍ତ ଭୂଷଣ ବୃଷଧନୁ ଯୁତ ସୁହୃଦ ଭବ ତାପ ନାଶି
ଶ୍ରୀନିଳୟ ଦ୍ୱିଜ ରାଜ ବନ୍ଦନୀୟ ଜନକ ସୁଖକୁ ପ୍ରକାଶି
ସୁମରି, ଶ୍ରିହରି ରାମଚନ୍ଦ୍ର ଶିବ,
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଯୁବା ଜନ କର୍ଣ୍ଣ ଉତ୍ସବ ।"

ଓଡିଶାର ପ୍ରତ୍ୟେକ ଶୁଭ କାର୍ଯ୍ୟରେ ମଙ୍ଗଳ ନିମିତ୍ତ ଦୁର୍ଗା ମାଧବଙ୍କ ଉପାସନା କରାଯାଏ । ପୁରୀ ତଥା ବ୍ରାହ୍ମଣ ଶାସନରପ୍ରାୟ ପ୍ରତ୍ୟେକ ଘରେ ଦୁର୍ଗାମାଧବଙ୍କ ପଟ୍ଟଚିତ୍ରକୁ ପୂଜା କରାଯାଏ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ ଦୁର୍ଗାମାଧବଙ୍କୁ ସ୍ତୁତି କରିବାରେ କୃପଣତା କରି ନାହାନ୍ତି । ଲାବଣ୍ୟବତୀ କାବ୍ୟର ସପ୍ତଦଶ ଛାନ୍ଦରେ ବର୍ଣ୍ଣନା କରିଛନ୍ତି ।

"ମହିଷ ବିଜୟ ଅତି ସୁରଭି ସ୍ୱରୂପ
ସଦାଶିବ ସୁଖ ଦାନେ କରଣେ ଲୋଲୁପ୍ତ
ରାମ ଦୁର୍ଗା ଇଷ୍ଟ ଦେବୀ,
ଉପଇନ୍ଦ୍ର ବୀରବର ଦୁଃଖ ନାଶେ ଭାବି ।"

ପ୍ରାୟ ସବୁ ଗ୍ରନ୍ଥର ପ୍ରତି ଛାନ୍ଦର ପ୍ରାନ୍ତରେ କବି ଭଗବତ ସ୍ମରଣରେ ସମାପନ କରିଛନ୍ତି । ତାଙ୍କର ଭକ୍ତିର ସବୋଧ ଓ ଆଧାତ୍ମିକତାର ସରସ, ରସାଳ, ଭାବପୂର୍ଣ୍ଣ ବର୍ଣ୍ଣନା ହୃଦୟ ସ୍ପର୍ଶୀ ହୋଇଛି । ବିଶେଷତଃ ଶ୍ରୀକ୍ଷେତ୍ର ଓ ଜଗନ୍ନାଥଙ୍କ ପ୍ରଶସ୍ତି ବର୍ଣ୍ଣନା କବିଙ୍କ ଶାସ୍ୱତ ଲେଖନୀରୁ ଝରିଆସିଛି ଭକ୍ତିରସ ପୂର୍ଣ୍ଣ ଅମୃତଧାରା । ଯାହା ତାଙ୍କୁ କେବଳ ଶୃଙ୍ଗାର ରସ ଚେତନା କବି କହି ହେବ ନାହିଁ ।

ମାନବର ଚରିତ୍ର ହେଉଛି ତା ବ୍ୟକ୍ତିତ୍ୱର ନିରିଚାୟକ । ଉତ୍ତମ ଚରିତ୍ର ବ୍ୟକ୍ତିର ଉତ୍ତୋରତ୍ତର ଭାବେ ଉନ୍ନତି ରେ ସହାୟକ ହୁଏ । ଉପେନ୍ଦ୍ର ଭଞ୍ଜ ବିଭିନ୍ନ ଦୁଃସ୍ଥିତି ମଧରେ ଅବିଚଳିତ ରହି ମହାନ କାବ୍ୟ ସମୂହ ରଚନାରେ ଅଗ୍ରସର ହୋଇଥିଲେ । ତାଙ୍କ ଭାଷାରେ -

"ରାଜାଙ୍କୁ ହୋଇଲେ ରାଜ୍ୟ ଭ୍ରଷ୍ଟ
ଯୁବାଙ୍କୁ ହୋଲେ ପତ୍ନିନଷ୍ଟ
ବୋଲେ ଉପଇନ୍ଦ୍ର ଏଥୁ ବଳୀ ନାହିଁ ଅନ୍ୟ କଷ୍ଟ ।"

ଏସବୁ ତାଙ୍କର ହୋଇଥିଲା ଯୁବା ସମୟରେ ପତ୍ନି ନଷ୍ଟ ହୋଇଥିଲା ଓ ଯୁବକ ଥିବା ବେଳେ ତାଙ୍କ ପିତା ବିତାଡିତ ହୋଇଥିଲେ । ଫଳରେ ରାଜପଦ ମଧ ଯାଇଥିଲା । କିନ୍ତୁ ଏହି କଷ୍ଟକୁ ଭୁଲି ସେ ସାରସ୍ୱତ ସାଧନାରେ ବ୍ରତି ହୋଇ

ଓଡିଆ ଭାଷା ଓ ସାହିତ୍ୟକୁ ଶିଖରସ୍ଥାନ ପହଞ୍ଚାଇବାକୁ ଉଦ୍ୟମ କରି ଯଶସ୍ୱି ହୋଇଥିଲେ । ଚରିତ୍ରବାନ ହୋଇ ନଥିଲେ ରାମା ତାରକ ମନ୍ତ୍ରରେ ସିଦ୍ଧି ଲାଭ କରିପାରିନଥାନ୍ତେ । ହନୁମାନଜୀ ମହାରାଜ, ସନ୍ଥ ତୁଳସୀ ଦାସ, ଭକ୍ତ ବଳରାମ ଦାସ ନିଜର ସାଧନା ସିଦ୍ଧି ଲାଭ କରିଥିଲେ । ଭଞ୍ଜ ମଧ ତାଙ୍କର ଚାରିତ୍ରିକ ସୁଗୁଣାବଳୀ ସିଦ୍ଧି ଲାଭକରି ଅସାମାନ୍ୟ କୃତିତ୍ୱ ଅର୍ଜନ କରିଥିଲେ । ପତ୍ନି ବିୟୋଗ ହେଲେ ମଧ ଅନ୍ୟ ପତ୍ନି ଗ୍ରହଣ କରି ନଥିଲେ । ଲାବଣ୍ୟବତୀ କାବ୍ୟରେ ଲେଖିଛନ୍ତି -

"ପରଧନ ପର ସ୍ତ୍ରୀ ହରଣକୁ
ଲେଖେ ସୁଖ କର ତହିଁ ମରଣକୁ "

ଜରତା ବେଶ୍ୟା ପ୍ରଲୋଭନରେ ନ ପଡିବା ସକାଶେ ବିଭାଣ୍ଡକ ମହର୍ଷି ଋଷ୍ୟଶୃଙ୍ଗଙ୍କୁ ଉପଦେଶ ଦେଇଛନ୍ତି -

"ବ୍ୟବହାର କଲେ ନିଷ୍ଫେତାହାଙ୍କ ସଙ୍ଗରେ
ବାବୁ ହେବୁ ଅଗ୍ନି ପ୍ରିତି ପତଙ୍ଗ ପ୍ରକାରେ ।"

ଘନ ଭଞ୍ଜ ରାଜା ହେବା ପରେ ଉପେନ୍ଦ୍ରଙ୍କୁ ରାଜ ଗାଦି ଅର୍ପଣ ପାଇଁ ବାରମ୍ବାର ଅନୁରୋଧ କଲେ ମଧ ସେ ଏହାକୁ ଏଡାଇ ଯାଇଛନ୍ତି । ରାଜ ଉଆସର ବ୍ୟଭିଚାର, ବହୁ ପତ୍ନି ଗ୍ରହଣ ଓ ତାଙ୍କ ପୂର୍ବରୁ ସାହିତ୍ୟରେ ପରକ୍ରିୟା ପ୍ରିତିର ବହୁଳ ବ୍ୟବହାର କବିଙ୍କ ମନୋକୁ ଆନ୍ଦୋଳିତ କରିଥିଲା । ସେ ସବୁକୁ ଘୃଣାକରି ଏକ ପତ୍ନି ବ୍ରତକୁ ସେ ସମାଜରେ ପ୍ରଚାର କରିବାର ବ୍ରତ ରୂପେ ଗ୍ରହଣ କରିଥିଲେ । ବୈଦେହୀଶ ବିଳାସରେ ମଧୁ ଶଯ୍ୟା ରାତ୍ରରେ କୁଳ ପଦୀପକୁ ସାକ୍ଷି ରଖି ପ୍ରଭୁ ରାମଚନ୍ଦ୍ର କହିଛନ୍ତି -

"ବିଦ୍ଗ୍ଧ ଶ୍ରୀ ରାମଚନ୍ଦ୍ର କହେ
ବନ୍ଧୁ ଜୀବନ ଥରବାର ଦେହେ
ବିଳାସିନୀ ନକରିବ ଅନକୁ
ବୋଲି ଚୁଇଁ ହୁତାସନକୁ ।"

ମାତା ଜାନକୀଙ୍କ ଶପଥକୁ କବି ମନୋଜ୍ଞ ରୂପେ ଉପସ୍ଥାପନ କରି ସିତାଙ୍କ

ଚରିତ୍ରର ମହନୀୟତାକୁ ପ୍ରତିପାଦନ କରିଛନ୍ତି ।

"ବଇଦେହୀ କେଶୁ କାଢି କେତକୀ
ବର୍ଣ୍ଣ ଲିଖିତ ପୋଛି କସ୍ତୁରୀକି
ବଳୀ ନାହିଁ ଆଜ ଯାଏ ମୋଚିଉ
ବଳାଇବି ନାହିଁ ଜନ୍ମେ ଜନ୍ମେତ
ବର ମଣ୍ଡପରୁ ଯିବ ବାହୁଡି
ବାର୍ତ୍ତାବହେ ହେ ତୁମ୍ଭକୁ ଥିବିଲୋଡି ॥
ବୀର ମୁକୁଟେ ପତ୍ର କରି ଦଉ
ବିନ୍ୟସ୍ତେ ସେ ପ୍ରଦିପେ ଦେଲେ ହସ୍ତ ।
ବୈଦର୍ଭି ଚାତୁରୀ ସେ ପ୍ରକାଶିତ
ବସ୍ତ୍ର ସଂଯୋଗେ ପଢି ରଘୁସୁତ । "

ପର ଉପକାରାୟ ସର୍ଗାୟ ବା ନମ୍ରନ୍ତି ଫଳିନ ବୃକ୍ଷାଃ ର ଭାବକୁ ନେଇ ଶିବ ଓ ବିଷ୍ଣୁଙ୍କ ଆଦର୍ଶକୁ ବର୍ଣ୍ଣନା କରିଛନ୍ତି ।

"ପର ଉପକାର ଯଶ ଧୋଇଲେ
ଦେଖି ମହାଦେବ ବିଷ ପିଇଲେ ।
ଦେଖି ଭୃତ୍ୟ ପଦ ହୃଦେ ଧରି ହରି
ଭାଗଗ୍ରାହି ବୋଲାଇଲେ ଶ୍ରୀହରି ।"

ଈଶ୍ୱରଙ୍କ ପ୍ରତି ସମର୍ପଣ ଭାବ ତାଙ୍କୁ ମହାନ କରିଥିଲା । ଦୃଢ ଭଗବତ ଶକ୍ତି ଉପରେ ବିଶ୍ୱାସ ବଳରେ ସେ ସକଳ ବାଧା ବିଘ୍ନ ମଧରେ ନିଜର ସୁନ୍ଦର ସୁନ୍ଦର ମହାନ କାବ୍ୟ ମାନ ସୃଷ୍ଟି କରିବାରେ ବାଧାର ସମ୍ମୁଖୀନ ହୋଇନାହାନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଏହି ବିଶ୍ୱାସର କଥାକୁ ବର୍ଣ୍ଣନା କରିଛନ୍ତି ।

"ଯେ ସର୍ବ ଭୁତ ପତି, ତାଙ୍କୁ ଭଜ ବିପତ୍ତି ନିପାତ ନୋହିବ କି ପାଇଁ ।"

ଭଞ୍ଜ ବହୁ ଶାସ୍ତ୍ର ଅଧ୍ୟୟନ କରିଥିଲେ । ପ୍ରକୃତ ଜ୍ଞାନୀ ବ୍ୟକ୍ତିର ରୁଚି ମାର୍ଜିତ ହୁଏ । ତା ପାଖରୁ ଖରାପଗୁଣ ଅପସାରିତ ହୁଏ । ଶାସ୍ତ୍ର କହେ ପିତା ମାତା ସମ ଆଉ କେହି ନାହିଁ । "ସର୍ବ ତୀର୍ଥ ମୟିମାତା ସର୍ବ ଦେବ ମୟପିତା" ବୋଲି ଶାସ୍ତ୍ର

କହେ ।  " ପିତରି ପ୍ରତିମା ପନ୍ନେ ପ୍ରିୟନ୍ତେ ସର୍ବ ଦେବତା "  ପିତା ସନ୍ତୋଷରେ ସର୍ବ ଦେବଗଣ ତୃପ୍ତି ଲାଭ କରିଥାନ୍ତି । ସମଗ୍ର ବ୍ରହ୍ମାଣ୍ଡ ପରିକ୍ରମା କରିବା ଯାହା ନିତ୍ୟ ବାପା ମାଙ୍କୁ ପ୍ରଦକ୍ଷିଣ କରିବା ତାହା । ପିତା ମାତାଙ୍କୁ ଯତ୍ନ କଲେ ଗଙ୍ଗା ସ୍ନାନ ଫଳ ମିଳେ ବୋଲି ଶାସ୍ତ୍ରୋକ୍ତ ଅଛି । ଯଥା – " ପିତର ଯସ୍ୟ ତୃପନ୍ତି ସେବାୟତ ଗୁଣେନଚ ତସ୍ୟ ଭାଗିରଥି ସ୍ନାନ ମହନ୍ୟ ହନ ବର୍ତ୍ତତେ ।" ଏହି ପରି ବହୁ ଶାସ୍ତ୍ର, ବେଦ, ଉପନିଷଦ ଆଦିରେ ଜ୍ଞାନୀ ଭଞ୍ଜ ଘୁମୁସର ରାଜ ଗାଦିରୁ ବିତାଡିତ ପିତା ଓ ପରିବାରକୁ ନିଜ ପାଖରେ ରଖି ଆଶ୍ରୟ ଦେଇ ଯତ୍ନର ସହ ଶେଷ ଅବସ୍ଥା ପର୍ଯ୍ୟନ୍ତ ନୟାଗଡ ମାଳି ସାହିରେ ରଖିଥିଲେ ।

ଶୃଙ୍ଗାର ବିଷୟକ ବହୁ ବର୍ଣ୍ଣନା ଯୋଗୁଁ କେହି କେହି ତାଙ୍କୁ କାମ ବାସନାର ବର୍ଣ୍ଣନା କରିଥିବା ରୀତି କବି ବୋଲି କହନ୍ତି । ଏହା ସଂପୂର୍ଣ୍ଣ ମିଥ୍ୟା । ଉପେନ୍ଦ୍ର ଭଞ୍ଜଙ୍କ ରଚନା ସଂସ୍କୃତ ଶାସ୍ତ୍ରସମ୍ମତ । ନାୟକ, ନାୟିକା ସଖି, ଦୂତି ଓ ଅନ୍ୟାନ୍ୟ ଚରିତ୍ର ଓ ବିଷୟର ବର୍ଣ୍ଣନା ସଂସ୍କୃତ  ବିଖ୍ୟାତ ଆଳଙ୍କାରିକଗଣଙ୍କ ଶାସ୍ତ୍ରୀୟ ନୀତି ସମ୍ମତ ଅନୁଯାୟୀ  ଲେଖିଛନ୍ତି । ସେ କୌଣସିଠାରେ ସେଥିରୁ ବିଚ୍ୟୁତି ହୋଇ ନାହାନ୍ତି ।

ଦାମ୍ପତ୍ୟ ସୁଖ ବର୍ଣ୍ଣନା ଅପବିତ୍ର ନୁହେଁ । ପତି ହିଁ ଭାର୍ଯ୍ୟା ଶରୀରେ ପ୍ରବେଶକରି ଗର୍ଭ କୋଷରୁ ସନ୍ତାନ ରୂପେ ଜନ୍ମ ନିଏ । ବିବାହ ସମୟରେ ବର ହସ୍ତକୁ କନ୍ୟା ହସ୍ତରେ ବାନ୍ଧିଲା ବେଳେ ବୈଦିକ ମନ୍ତ୍ର ଉଚ୍ଚାରଣ କରାଯାଏ –

"ଅପୂର୍ବେୟ ହରେ ମାୟା ତ୍ରୀଗୁଣ
ରଜୁଃ ରୁପିଣୀ, ତୟାବଦ୍ଧ ନଚଳତି
ଚିତ୍ତ ଧାବତି ଧାବତି ।"

ସତ୍ତ୍ୱ, ରଜ, ତମ ଏହି ତ୍ରିଗୁଣାତ୍ମକ ମାୟାରୂପକ ରଜ୍ଜୁରେ ବାନ୍ଧି ହୋଇଗଲେ ସାରା ଜୀବନ ପାଇଁ । ଦେହ ଅସାର ନୁହେ । ବ୍ରହ୍ମ ସତ୍ତା ଶରୀରରେ ବିଦ୍ୟ ମାନ । ତେଣୁ ଦେହ ଦେବାଳୟ ।   ଉପନିଷଦ କହେ ଆନନ୍ଦରୁ ସବୁର ସୃଷ୍ଟି । ଜୀବର ଜନ୍ମ, ଜୀବନ, ମରଣ ସବୁ ଆନନ୍ଦରେ ପୂର୍ଣ୍ଣ । ଶୂନ୍ୟରେ କେହି

ସନ୍ନ୍ୟାସୀ ହୋଇ ପାରେନି । ଭୋଗରେ ତ୍ୟାଗ ଥାଏ । ଗ୍ରାହ୍ୟସ୍ଥ ଜୀବନ ଭୋଗ ଓ ତ୍ୟାଗର ଏକ ସମୀକରଣ ଓ ସାମ୍ୟର ପ୍ରତିକ । ଧର୍ମ, ଅର୍ଥ, କାମ, ମୋକ୍ଷରୁ କାମ ହେଉଛି ପ୍ରଥମ । କାମ ବା କାମନା କରିବା ଅଥବା ଦୃଢ଼ ସଂକଳ୍ପ ସବୁ ସୃଷ୍ଟିର କାରଣ । ସୃଷ୍ଟି ନଥିଲେ ଆଉ ସବୁ ଶୂନ୍ୟ । ବିବାହର ଲକ୍ଷ୍ୟ ରତି ସୁଖ ଓ ସନ୍ତାନ ଲାଭ । ରତି ସୁଖ ହେଉଛି ଆନନ୍ଦ । ସମଗ୍ର ଜଗତ ଆନନ୍ଦରୁ ସୃଷ୍ଟି । ଏହା ଉପରେ ଉପନିଷଦରେ ବିସ୍ତୃତ ବର୍ଣ୍ଣନା ଅଛି । ସ୍ତ୍ରୀ ବିନା ସୃଷ୍ଟି ଅସମ୍ଭବ । ଯେଉଁ ମାନେ କହନ୍ତି ଏପରିକି କେତେକ ଗ୍ରନ୍ଥ ମଧ୍ଯ କହେ ସ୍ତ୍ରୀ ହେଉଛି ନର୍କର ଦ୍ୱାର । ଯେ କହିଛି ସେ ନିଜେ ଓ ସାରା ସଂସାର ସେହି ନର୍କର ଦ୍ୱାର ଦେଇ ଏହି ଧରା ପୃଷ୍ଠରେ ସୃଷ୍ଟି ହୋଇଛନ୍ତି । ତେଣୁ ଉପେନ୍ଦ୍ରଙ୍କ ଦାମ୍ପତ୍ୟ ସୁଖ ବର୍ଣ୍ଣନା ବା ସ୍ତ୍ରୀ ସୌନ୍ଦର୍ଯ୍ୟରେ ରସ ପୂର୍ଣ୍ଣ ଉପସ୍ଥାପନା ଅଶ୍ଳୀଳ ନୁହ ଶାସ୍ତ୍ରସମ୍ମତ । ମହାଯୋଗୀ, ମହାତପସ୍ୱୀ ଓ ରାଜର୍ଷି ଉପେନ୍ଦ୍ର ଭଞ୍ଜ ବହୁ ସାଧ୍ୟାୟ ସାଧନା କରି ମହାନ ଗ୍ରନ୍ଥମାନ ରଚନା କରି ବିଦ୍ୱାନ, ଗୁଣି ତଥା ମହାନ ଚାରିତ୍ରିକ ସମ୍ପନ୍ନ ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରିଛନ୍ତି ।

X-X-X-X-X

# ଭଞ୍ଜ ଓ ସମାଜ

ସାହିତ୍ୟ ହେଉଛି ସମାଜର ଦର୍ପଣ । ଉତ୍ତମ ଲେଖକ ମାନଙ୍କ ସୃଷ୍ଟିରେ ତାଙ୍କ ସମୟର ସମାଜର ପରିସ୍ଥିତି, ଚାଲିଚଳନ, ରୀତି ନୀତିର ପ୍ରତିଫଳନ ହୋଇଥାଏ । ଉପେନ୍ଦ୍ରଙ୍କ ସମୟରେ ସୈନ୍ୟ ମାନେ ଯୁଦ୍ଧରେ ଲିପ୍ତ ଥିଲେ । ପୂର୍ବରୁ ଓଡିଆ ମାନେ ବିଭିନ୍ନ ରାଜ୍ୟ ଜୟ କରୁଥରଲେ । କିନ୍ତୁ ଓଡିଆ ରାଜା ମାନଙ୍କ ଦୁର୍ବଳତାର ସୁଯୋଗ ନେଇ ବଙ୍ଗ ନବାବ, ମୋଗଲ ଓ ଦକ୍ଷିଣ ଶାସକଗଣ ଓଡିଶା ଉପରେ ଲୋଲୁପ ଆଖି ପକାଇଲେ । ଭୀଷଣ ସଂଗ୍ରାମର ଦୃଶ୍ୟକୁ କବି ତାଙ୍କ ରଚନାରେ ସ୍ଥାନ ଦେଇଛନ୍ତି ।

"ମର୍କତ ନଳୀରୁ ବାହାରି ଯାଉଛି ଅତି ଜ୍ୱଳିତ ଗୁଳି ଯେ ।"

ପାଇକ ମାନେ ବ୍ୟବହାର କରୁଥିବା ଅସ୍ତ୍ରଶସ୍ତ୍ରର ବର୍ଣ୍ଣନା ମଧ୍ୟରେ ଅଛି ଉନ୍ନତରବାରୀ, ବୁନା ଯାମାଦାର ଚର୍ମ ଅଚୁଆଣି ଖଡ୍‌ଗ, ଚର୍ମବାର, ମନଦରି ସାୟକ, ଉତ୍ତମ ଫରୀ, ଶୃଙ୍ଗ କମାଣ, ତୀର ଚାତକ ପତ୍ର ପ୍ରଭୃତି । ସେ ସମୟରେ ନାୟକ ନାୟିକାଙ୍କ ବ୍ୟତୀତ ମାଲ୍ୟାଣୀ, ନାପିତୁଣୀ, ନଟ, ନଟୀ, ଐନ୍ଦ୍ରଜାଲିକା, ମଦୁସୁଲିମାନେ ଯେଉଁ ବସନ ଭୁଷଣ ବ୍ୟବହାର କରୁଥିଲେ ତାର ବର୍ଣ୍ଣନା କବି କରିଛନ୍ତି । ସେ ସମୟରେ ସ୍ତ୍ରୀ ମାନେ ଦେହରେ ଚିତା କୁଟାଉଥିଲେ । ଲାବଣ୍ୟବତୀର ୧୩ଶ ଛାନ୍ଦ ମାଲ୍ୟାଣୀ ବର୍ଣ୍ଣନାରେ

"ହରି ତାଳ କାଳୀ ଚିତା, ଉକୁଟାଇଛି ବନିତା
ଦେହତ ଅତ୍ୟନ୍ତ ଗୋରା, ତହିକ ତୋରା ।"

ଫୁଲଗୁଣା, ମାଠଗୁଣା ନାକରେ ବ୍ୟବହାର କରୁଥିଲେ । ଖଡୁବାହି ଧାରଣ କରୁଥିଲେ । ବିଦ ମାଳ ପାଟସୁତ୍ର ହସ୍ତରେ ବାନ୍ଧୁଥିଲେ । ପାଦର ବର୍ଣ୍ଣନାରେ -

"ପ୍ରପଦରେ କଂସା ମୁଦି, ଶବଦେ ଧୈଇର୍ଯ୍ୟ ଖେଦି
ବେଢରେ ଅଳତା ଚତ୍ର ଅତି ବିଚିତ୍ର ଯେ ।"

ଲାବଣ୍ୟବତୀର ୧୫ଶ ଛାନ୍ଦରେ -

"ବେନି ପୁଟରେ ତା ଗୁଣା ନାକଚଣା ଅଛି

ନାକ ଦଣ୍ଡି ଫୋଡାଇ ଗୁଣାଏ ଲଗାଇଛି ।
ସୁବା ମଲ୍ଲି କଣ୍ଟି ଫୁଲ ଜାଲି ପାଟି କାମ
ବାଳାର ଶ୍ରବଣକୁ କରିଛି ମନୋରମ ଯେ
ତହିଁରେ ହଲାଇ ସେ ଝଲକ ଝଲକକୁ
ଆସ ବୋଲି ଡାକଇ ପୁରୁଷକୁ ।"

ନଟ ମାନଙ୍କ ବର୍ଣ୍ଣନାରେ କବି ଲେଖିଛନ୍ତି -

"ପିନ୍ଧି ଚାଳନା କାଛକୁ ବାନ୍ଧିଛନ୍ତି ତାହି
ଭାଲେ କଳା ଚିତା କେ ବିଭୂତି ଭୂଷା ଦେହି ।
ବହିଛନ୍ତି ସେ ଦୀର୍ଘ ଶଳକ ଆଦି ଢୋଲ
ଘଟ ନାଟ ଅରଟା ରନାପ ସେ ମଞ୍ଜୁଳ ।"

ସେତେବେଳର ବେଶ ଏବେ ମଧ୍ୟ କେତେକ ଲୋକ ନୃତ୍ୟରେ ଏହା ଦେଖିବାକୁ ମିଳେ । ଏବେ ଗଞ୍ଜାମର ରଣପା ନୃତ୍ୟ ଆନ୍ତର୍ଜାତିକ ସ୍ତରରେ ମଧ୍ୟ ପରିବେଶଣ ହେଉଛି । ଓଡିଶାର ବହି ବାଣିଜ୍ୟର ଚିତ୍ର ଭଞ୍ଜଙ୍କ ରଚନାରୁ ମିଳେ । ଯଥା -

"ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ
ସାଧବ ଯୁବତି ଗଣ ଅତି ପ୍ରମୋଦରେ ।
ଗଲେ ବୋଇତ ବନ୍ଦାଇ
ଅର୍ଘ୍ୟ ସ୍ଥାଳୀ ମାନଙ୍କରେ ହୁଳ ହୁଳି ଦେଇ ।"

ସେ ସମୟ ଓଡିଶାରେ କିପରି ସୁକ୍ଷ୍ମ ହସ୍ତତନ୍ତ ଶାଢୀ ପ୍ରସ୍ତୁତ ହେଉଥିଲା । ତାର ବର୍ଣ୍ଣନା -

"ବାହର କଲେ ନୀଲ ଝୀନ ଶାଢି
ସିନ୍ଦୁର ଧଡି ଫୁଲ ରଙ୍ଗ ପଡି
ରଖିଲେ ରହିବ ହାତ ମୁଠାରେ
ସତେ ରଖିଥିଲେ ବଂଶବଳୀରେ ।"

ହାତୀଦାନ୍ତ ପାନିଆଁ ବଡ ଘର ମାନଙ୍କରେ ବ୍ୟବହାର ହେବାର ଚିତ୍ର ବର୍ଣ୍ଣିତ ।

"ଫେଇ ଫେଇ ସୁଗନ୍ଧ ଧୂପେ ଧୂପେ ଦେଇ
ଗଜଦନ୍ତ କଙ୍କ ତିକା ଚଳାଇ ।"

ଶିଶୁ ଜନ୍ମ ବେଳେ ସୁତିକା ଗୃହରେ ପଞ୍ଚୁଆତି ବିରି, ମୁଗ, ଗହମ, ଚଣା ଆଦି ଶସ୍ୟକୁଳ ମା ଓ ପିଲାର ଶେଯ ଚାରିପଟେ ବୁଣିବା, ଷଷ୍ଠ ଦିନ ଷଠୀଘର କାନ୍ଥରେ କଉଡି ଦେଇ ତିଆର କରିବା ଓ ତାର ପୂଜାବିଧି କବି ବର୍ଣ୍ଣନା କରିଛନ୍ତି ।

"ବ୍ରିହି ଆଜି ପଞ୍ଚବୀଜ ପଞ୍ଚୁଆତି ଯେ,
ବ୍ୟାନ ସହ ପଞ୍ଚବାୟୁ ତୋଷିବ ସେ ଯେ ।
ବନଜିନୀ ଲକ୍ଷ ନାରୀ ଷଷ୍ଠୀ ଘରକୁ
ବରାଟକେ ମଣ୍ଡାଇଲେ ମନୋହରକୁ ।"

ବର କନ୍ୟାଙ୍କ କୋଷ୍ଠି ଦେଖି କିପରି ବିବାହ ଲଗ୍ନ ନିରୂପଣ କରାଯାଏ । ବିବାହ ପୂର୍ବ ପାଟ ଅଳଙ୍କାର ପ୍ରଭୃତି ଦେବୀଙ୍କ ପାଖକୁ ନେଇ ଦିଅଁ ମଙ୍ଗୁଳା ଓ ସାତଘରେ ପାଣି ତୋଳି ଗନ୍ଧଶଣ କରିବା ଏହି ବିଧି ବିଧାନର ବର୍ଣ୍ଣନା କବି କରିଛନ୍ତି ।

"ଦେହରଣ ଭାଙ୍ଗି ବିଭାଦିନ ମୂଳ କରି
ବିଶୁଦ୍ଧ ତାରା ଲଗ୍ନକୁ ଜ୍ୟୋତିଷେ ବିଚାରୀ ॥"

"ବ୍ରାହ୍ମଣୀ ସାତ ଅଳଙ୍କାର କରି ତହିଁ
ବସ୍ତ୍ରପାଟେ ଲଲାଟେ ସିନ୍ଦୁର ଚିତା ଦେଇ
ନାପିତ ନୂତନ ସର୍ପ ରୋପି ନାରୀକେଳ
ନବ ତେଳ ପ୍ରଦିପ ବଦରୀ ଦୃବାଦଳ
ବଜାଇ ବିବିଧ ବାଦ୍ୟ ଦେବୀ ଗନ୍ଧଷିଲେ
ସପତ ଗୃହ ବୁଲିଣ ସଲିଳ ତୋଳିଲେ ।"

ଉପେନ୍ଦ୍ର ଭଞ୍ଜ ଯେଉଁ ସାହିତ୍ୟିକ ବିପ୍ଳବ ସୃଷ୍ଟି କରିଛନ୍ତି ତାର ତୁଳନା ନାହିଁ । ନିଜର ଅଧ୍ୟବସାୟ ବଳରେ ପ୍ରଗାଢ ଚେଷ୍ଟା କରି, ରାମତାରକ ମନ୍ତ୍ରର

ସାଧନା ନିଜର ପ୍ରଚଣ୍ଡ ଆତ୍ମବିଶ୍ୱାସ ବଳରେ ବିଭୀନ୍ନ ଶାସ୍ତ୍ରରେ ଗଭୀର ପ୍ରବେଶ ଯୋଗୁଁ । ସେ ଓଡିଆକୁ ନାକ ଟେକୁଥିବା ସେତେ ବେଳର ପଣ୍ଡିତ ସମାଜକୁ ଉଚିତ ଜବାବ ଦେଇ ନୈଷଧ କାବ୍ୟ ପରିକାବ୍ୟ, ସଂସ୍କୃତ ଭାଷାର ବିଶିଷ୍ଟ ଲେଖକ କାଳିଦାସ, ବାଣଭଟ୍ଟ, ଭବଭୂତି, ଶ୍ରୀହର୍ଷ, ମାଘଙ୍କ ପରି ଲେଖକଙ୍କ କାବ୍ୟର ସମକକ୍ଷ କାବ୍ୟ ମାନରଚନା କରି ନିଜର ଯଶ ଗୌରବ ସହ ଓଡିଆ ସାହିତ୍ୟକୁ ଯେଉଁ ରୂପ ଦେଇ ବିପ୍ଳବ ସୃଷ୍ଟି କରିଛନ୍ତି ତାହା ଅନିର୍ବଚନୀୟ ।

ରାଜ ଅନ୍ତପୁର ବିବସ୍ତତା, ପରକ୍ରିୟା ପ୍ରୀତିର ବିରୋଧ କରି ଏକପତ୍ନିବ୍ରତର ପ୍ରଚାର ସବୁ କାବ୍ୟରେ କରିଛନ୍ତି । ପରଂ ବ୍ରହ୍ମ ରଘୁବଂଶନାଥ ରଘୁନାଥ ଓ ମା ଜାନକୀଙ୍କ ଆଦର୍ଶକୁ ତାଙ୍କର ସାଂସ୍କୃତିକ ସ୍ୱର ରୂପେ ସର୍ବତ୍ର ବ୍ୟବହାର କରିଛନ୍ତି । ରାଜପୁତ୍ରମାନଙ୍କ ସ୍ତୀର ଅଭାବ ନଥିଲା ତଥାପି ନିଜର ପ୍ରୟତମା ପତ୍ନି ମାନଙ୍କ ପାଇଁ ବିରହ ସେତେବେଳର ସାମାଜିକ ପ୍ରଥାର ବିରୋଧରେ ବିପ୍ଳବ ଥିଲା । ଦାମ୍ପତ୍ୟ ସୁଖ ସମାଜ ଓ ରାଷ୍ଟ୍ର କିପରି ଶୃଙ୍ଖଳିତ କରିପାରେ ତାହା ତାଙ୍କର ଏକପତି-ପତ୍ନି ବିଶିଷ୍ଟ କାବ୍ୟ ମାନଙ୍କର ନୀରବ ସାମାଜିକ ଆନ୍ଦୋଳନ ଥିଲା । କବି ତୈତ୍ତୀରୀୟ ଉପନିଷଦର ବାଣୀ "ଆନନ୍ଦାଦେବ ଖଲ୍ୱିମାନୀ ଭୂତାନୀ ଜାୟନ୍ତେ ।" ଆନନ୍ଦରୁ ଜଗତ ସୃଷ୍ଟି ଆନନ୍ଦରେ ହିଁ ବିଲୟ । ଏହି ତଥ୍ୟକୁ ଦାମ୍ପତ୍ୟ ମିଳନର ସ୍ୱର ରୂପେ ଗ୍ରହଣ କରି ମଧୁର ରସର ଗଙ୍ଗା ପ୍ରବହମାନ କରାଇ ଓଡିଆ ସାହିତ୍ୟ ଜଣେ ବିରାଟ ଯୁଗ ବିପ୍ଳବୀ ରୂପେ ପୂଜିତ ହେଉଥିବେ

**X-X-X-X**

# ଭଞ୍ଜୀୟ ପ୍ରଭାବ

ପ୍ରତ୍ୟେକ ଲେଖକଙ୍କ ଉପରେ ନିଶ୍ଚିତ ରୂପେ ଅନ୍ୟ ଲେଖକମାନଙ୍କ ପ୍ରଭାବ ପଡିଥାଏ । ଭଞ୍ଜଙ୍କ ଉପରେ ଓଡିଆ କବି ମାନଙ୍କ ପ୍ରଭାବ ପଡିବାର ନିଶ୍ଚୟ ସମ୍ଭାବନା ଅଛି । ସାରଳା ଦାସ, ଜଗନ୍ନାଥ ଦାଶ, ବଳରାମ ଦାସ ଆଦି ବୈଷ୍ଣବ ପଞ୍ଚସଖା ଓ ସମ ସାମୟିକ କବିଗଣ, ଦୀନକୃଷ୍ଣ ଦାସ, ଦେବ ଦୁର୍ଲଭ ଦାସ, ଶଶଶେଣା, ପିତାମହ କବି ଧନଞ୍ଜୟ ଭଞ୍ଜ ଇତ୍ୟାଦିଙ୍କ ପ୍ରଭାବରେ ପ୍ରଭାବିତ ହୋଇଥିବେ । କିନ୍ତୁ ଭଞ୍ଜ ଓଡିଆ ରଚନା ଶୈଳୀର ଦିଗ ବଦଳାଇ ଦେଇଥିଲେ । ତେଣୁ ଭଞ୍ଜ ଓ ତାପରେ ତାଙ୍କ ଶୈଳୀରେ ଲେଖୁଥିବା ଲେଖକମାନଙ୍କ ସମୟକୁ ରୀତିଯୁଗ କୁହାନଯାଇ 'ଭଞ୍ଜ ଯୁଗ' ବୋଲି କୁହାଯାଏ । କାବ୍ୟ ରଚନାର ପରିପାଟି, ଶବ୍ଦ ସଂଯୋଜନା, ନୂତନ ଶୈଳୀ, ଅଳଙ୍କାରମାନଙ୍କର ଯଥାଯଥ ବିନ୍ୟାସ ଇତ୍ୟାଦିରେ ସେ ପୂର୍ବସୂରୀମାନଙ୍କ ଠାରୁ ସ୍ୱତନ୍ତ୍ର ଏବଂ ନୂତନ ଯୁଗ ଆରମ୍ଭ କରିଛନ୍ତି । ଭଞ୍ଜଙ୍କ ପୂର୍ବରୁ ସାମାନ୍ୟତମ ଚେଷ୍ଟା ହୋଇଥିବାରୁ ତାକୁ ପ୍ରାକ୍ ଭଞ୍ଜ ଯୁଗ ଓ ଭଞ୍ଜ ଓ ତାଙ୍କର ନିକଟବର୍ତ୍ତୀ ସମୟକୁ ଭଞ୍ଜ ଯୁଗ ଓ ଭଞ୍ଜଙ୍କ ପରେ ଯଦୁମଣି, କବି ସୂର୍ଯ୍ୟ, ଅଭିମନ୍ୟୁ ଇତ୍ୟାଦିଙ୍କ ସମୟକୁ ପରିବର୍ତ୍ତୀ ଭଞ୍ଜ ଯୁଗ କୁହାଯାଏ । ଭଞ୍ଜଙ୍କ ଉପରେ କିନ୍ତୁ ଓଡିଆ କାବ୍ୟ ଓ କବି ମାନଙ୍କ ଅପେକ୍ଷା ସଂସ୍କୃତ କବି ଓ ସେମାନଙ୍କ କାବ୍ୟର ପ୍ରଭାବ ପଡିଥିଲା । ଭଞ୍ଜଙ୍କ ଦୃଢ ସଂକଳ୍ପ ଥିଲା ମହାନ ସଂସ୍କୃତ ରଚନା ସହ ଓଡିଆରେ ସେହିପରି ସମକକ୍ଷ ଗ୍ରନ୍ଥ ରଚନା କରିବା । ପ୍ରକୃତରେ ସେ ସେଥିରେ ଯଶସ୍ୱୀ ହୋଇଛନ୍ତି । କାଳି ଦାସ, ମାଘ, ଶ୍ରୀ ହର୍ଷ, ବାଣଭଟ୍ଟ, ଭବଭୂତି ଇତ୍ୟାଦି ମହାନ କବିମାନଙ୍କଦ୍ୱାରା ସେ ପ୍ରଭାବିତ ହୋଇଛନ୍ତି । କେବଳ କବି ମାନଙ୍କ ଦ୍ୱାରା ନୁହେଁ ସେ ସଂସ୍କୃତ ଭାଷାର ଅନ୍ୟାନ୍ୟ ଦିଗ ଯଥା ଅଳଙ୍କାର ଶାସ୍ତ୍ର, ବ୍ୟାକରଣ, ଜ୍ୟୋତିଷ, ସାଂଖ୍ୟ, ମୀମାଂସା, ଉପନିଷଦ ତଥା ଅନ୍ୟାନ୍ୟ ବିଷୟରେ ଗଭୀର ଅଧ୍ୟୟନ କରିଥିଲେ । କବି ରଚନା ଉପରେ ବହୁ ଭାବରେ ମାଘ ଓ ଶ୍ରୀହର୍ଷଙ୍କ ନୈଷଧ କାବ୍ୟର ପ୍ରଭାବ ପଡିଛି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟକୁ ଭଞ୍ଜ ନିଜେ କହିଛନ୍ତି । "ଘେନ ନୈଷଧ ପରାଏ, ଉପଇନ୍ଦ୍ର କହେ

ବୁଧେ ପ୍ରମୋଦ କରାଏ ।"   ଭଞ୍ଜଙ୍କ ଉପରେ ନୈଷିଧ କାବ୍ୟର ପ୍ରଭାବର ଏକ ଉଦାହରଣ -

"ଶୀତଳ ଯାହା କିରଣ ପରଶରେ ସମୀରଣ
ରଣ ରଣ ମିତ୍ରପଣ ଘେନି କି ଏବେ
ବିରହ ଗୁଣ ବିରହି ଠାରେ ଆଦରିଲା ସେହି
ସେ ଅଛି ଯା ଗର୍ଭେ ତହୁଁ ଜାତ ସଭାବେ
ଫୁସ ଶୋଇ ସୁଧା ଚତ୍ୱର
ଚନ୍ଦ୍ର ଚାହିଁ ହୋଇଲା ଅଧିକ କାତର ।"

ଏଠରେ ଚନ୍ଦ୍ର କନ୍ଦର୍ପର ସହକାରୀ ମିତ୍ର ପରି କାର୍ଯ୍ୟ କରିଛି । ଚନ୍ଦ୍ର ଶୀତଳ ହେଲେ ମଧ ବିରହୀକୁ ଉତ୍ତପ୍ତ କରି ଦେଉଛି । କବି କହିଛନ୍ତି ଚନ୍ଦ୍ର ଶୀତଳ ହେଲେ ହେଁ ସେ ସମୁଦ୍ରରୁ ଉତ୍ପତ୍ତି ଲଭିଥିବାରୁ ସାମୁଦ୍ରିକ ବଡବାନଳଠାରୁ ଦାହିକା ଶକ୍ତି ପ୍ରାପ୍ତ କରିଛି । ଏହି ପଦଟି ଶ୍ରୀହର୍ଷଙ୍କ ନୈଷଧ କାବ୍ୟ ଦ୍ୱାରା ପ୍ରଭାବିତ । ଯଥା -

"ଅୟି ବିଧୋ ପରିପୃଚ୍ଛ ଗୁରୁକୁତଃ
ସଟମ ଶିକ୍ଷିତ ଦାହ ବଦାନ୍ୟତା
ଗଚ୍ଛିତ ଶମ୍ଭୁଗଜାତ ଗରଳତ୍ୱୟା
କିମୁଦଧୌ ଜଡବା ବଡବାନଳାତା ।।"

ବିଭିନ୍ନ ଅଳଙ୍କାରର ପ୍ରୟୋଗ ଶୈଳୀ ସଂସ୍କୃତ ସାହିତ୍ୟର ବରିଷ୍ଠ କବି ମାନଙ୍କ ଦ୍ୱାରା ପ୍ରଭାବିତ ଯାହାକି ଏହି କ୍ଷୁଦ୍ର ପୁସ୍ତିକାରେ ପ୍ରକାଶ କରିବା ସମ୍ଭବ ନୁହେଁ । ସେହିପରି ଭଞ୍ଜଙ୍କ ପ୍ରଭାବ ଯଦୁମଣି, ଭକ୍ତଚରଣ, ଅଭିମନ୍ୟୁ ସାମନ୍ତ ସିଂହାର, ଗୋପାଳକୃଷ୍ଣ, କବିସୂର୍ଯ୍ୟ ବଳଦେବ ରଥ, ବ୍ରଜନାଥ ବଡ ଜେନା, କବି ଶେଖର ଚିନ୍ତାମଣି ମହାନ୍ତି ଇତ୍ୟାଦି କବି ମାନଙ୍କ ଉପରେ ପଡିଛି । ଏପରିକି ଏ ପର୍ଯ୍ୟନ୍ତ କବି ଓ ଲେଖକମାନେ ତାଙ୍କ ଦ୍ୱାରା ପ୍ରଭାବିତ । ବିଶେଷ କରି ଉପମା ଓ ଅନୁପ୍ରାସର ବିନା ପ୍ରୟୋଗ ରଚନା ସୌନ୍ଦର୍ଯ୍ୟ ଆସେ ନାହିଁ । ତେଣୁ ଅତ୍ୟାଧୁନିକ ଯୁଗରେ ମଧ ସୁନ୍ଦର ଆଳଙ୍କାରିକ ଶୈଳୀକୁ ବ୍ୟବହାର କରିଥାନ୍ତି । କବିସୂର୍ଯ୍ୟ

ଲେଖାରେ ଅଳଙ୍କାର ପ୍ରୟୋଗର ଏକ ଉଦାହରଣ -

"ମାନ ସୁମନା, କରିଦେ ମାନସୁମନା
ଗିରି ସମ ଯାଇରେ ରାମା ଗିରିସମ ଯାଇ
ଦେଇ ମୁଁ ପାଇଛି ତୋତେ ଗିରିଶ ମନାଇ ।"

ଭଞ୍ଜଙ୍କ ନାୟକ ରୂପ ବର୍ଣ୍ଣନା ଅଭିମନ୍ୟୁଙ୍କୁ ପ୍ରଭାବିତ କରିଛି ତାର ଉଦାହରଣ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରୁ -

"କପାଳ ଭ୍ରୁରୁ ନେତ୍ର ଘେନି ସେ ତନବନ୍ତ କାମ ନୁହେଁ ଛଦ୍ମ ।"

ଶମ୍ପାକ ଧନୁରେ ସଙ୍ଗ ଭୃଙ୍ଗ ଗୁଣ ବାଣ ନୀଳାବ୍ ଜକି ପଦ୍ମ ରେ ସଖି ହୃଦ ଲାଖ କଲା କିସ ଦେଖି ବହି ପଡିଲା ପ୍ରାୟ ରଙ୍ଗ ଅଧରକି ଚିତ୍ର ମାନ୍ଦାର ଫୁଲ ଗର୍ଭେ ଖଞ୍ଜିଛି କେଉଁ ଧାତା ରଜନବ୍ୟାଜେ କୁନ୍ଦ କଢିମାଳ ରେମିତ. ସଦା ସ୍ଫୁଟ ଅସ୍ଫୁଟ ଅଦ୍ଭୁତ, ନପାଇଲେ ତହୁଁ ମଧୁସତ, ଉଡିଯିବ ପ୍ରାଣ ମଧୁବ୍ରତ, ସେହିପରି ବିଦଗଧ ଚିନ୍ତାମଣି କାବ୍ୟରେ ଅଭିମନ୍ୟୁ ଶ୍ରୀ କୃଷ୍ଣ ରୂପ ବର୍ଣ୍ଣନାରେ -

"କଳା କଞ୍ଜଦଳା ଅଞ୍ଜନ ମର୍କତ ଇନ୍ଦ୍ରନୀଳମଣି ଘେନ
ସୁଧା ଆନନ୍ଦ ଆହାଲାଦ ମାଦକ ଶୃଙ୍ଗାର ପ୍ରେମ ମିଳନ ଗୋ ପୁଣି
ଶୋଭା ସମୁଦ୍ର ମନ୍ଥା କବଣୀ, କୋଟି ସୃଷ୍ଟି କାନ୍ତି ସାରଶ୍ରେଣୀ ମହାଲାବଣ୍ୟ
ରତନ ଖଣି ।
କେତେ କାଳ କଷ୍ଟି କଷ୍ଟି ବିଧିସିଦ୍ଧି କଲା ବିଚିତ୍ର ପ୍ରତିମା
ମୋହନ ମନ୍ତ୍ରରେ ଜୀବନ୍ୟାସ ଦେଇ କଲା ଭଙ୍ଗିମା
ତା ଭାବ, ହେଲା ବିଚିତ୍ର ମାଧୁର୍ଯ୍ୟାର୍ଣ୍ଣବ ।"

ସେହିପରି ଭଞ୍ଜଙ୍କ ସଂଧ୍ୟା ବର୍ଣ୍ଣନା ଲାବଣ୍ୟବତୀରେ -

"ଏଥୁ ଅନ୍ତେ ଶୁଣ ରସ  ଗ୍ରୀଷମ ନିଶି ପ୍ରବେଶ
ଉଦୟ ତାର ଜୀବେଶ ହେଲେ ଆକାଶେ
ଚକ୍ର ସୁଖ ଚକ୍ରନକ୍ର ଛେଦନେ ହୀରକ ଚକ୍ର
ପିଙ୍ଗିଛି ତାତ ସିନ୍ଧିରେ କାମକି ରୋଷେ

ବେଶହେବ କିରାତ୍ରୀ ବାଳୀ ସ୍ଫଟିକ ପେଟିରେ କିମ୍ବା କସ୍ତୁରୀ ଦଳି,
ଆଜିକି ବିଭାବରୀକି ହୋଇବ ବିଭାବରୀକି
ମଲ୍ଲୀମାଳ ଦେଇ ବିଧୁକରଣ ମଣି
ଏ ବିଚିତ୍ର ସ୍ୱୟମ୍ବର ନାରୀକି ବରିଲା ବର
ଏତେ କାଳ ଦେଖାଗଲା ଏକଥା ପୁଣି
ରବି କରେ ମହି ମହିଳା
ତାପି ହୋଇଥିଲା କି ଚନ୍ଦନ ଲେପିଲା ।"

ଅଭିମନ୍ୟୁ ସଂଧ୍ୟା ବର୍ଣ୍ଣନାରେ -

"ଏ ଉତ୍ତାରୁ ସୁବିଦୁଷ ସାବଧାନେ ଘେନ ରସ
ବାରୁଣୀ ବିଳାସୀ ରବି ପୂର୍ବେ ଉଦେ ଶଶିଛବି
ରଙ୍ଗିମା ଶୁକ୍ଳିମା ମନୋହର ବିକାଶ
ସହଜରେ ଶରଦ କାଳ, ଋତୁ ମୁଖଜାତ ତିଥିମିଶି ମଞ୍ଜୁଳ ।
ବିଚାରିକି ପଦ୍ମ ଯୋନୀ ସୁଧା ଅନୁରାଗ ଘେନି
ବିଶ୍ୱ ତୁଳନାରେ ତୁଳି କଳନା କରେ ।
ଉଶ୍ୱାସ ଭାଗ ଉଠିଲା ଗରୁଆ ତଳକୁ ଗଲା
ଉଚ୍ଚନୀଚ୍ଚ ନୀଚ୍ଚ ଉଚ୍ଚ ଜଣା ବିଧିରେ
ସୁଧା ଅନୁରାଗ ସଙ୍ଗତେ ସରିକରି ପାରିବ କେ କହ କେମନ୍ତେ
ତାତ ସିଦ୍ଧିକି ବଳିବ  ବିଚାରି କି କାମଦେବ
ମାଣିକ୍ୟ ହୀରା ରଥାଙ୍ଗ ପେଷି ଦେଇଛି ।
ବିଯୋଗ ସୁଖ ଦୁଃଖଦ ସଂଯୋଗୁ ଦୁଃଖ ସୁଖଦ
ପରସ୍ପରେ ବିରୋଧା ଭାସକୁ କରୁଛି
ତମ ନାଶନେତ ପ୍ରୟୋଗ, ତମ ପାଶେ ତମୁଆସେ ଏ କି ସଂଯୋଗ ।"

ଲାବଣ୍ୟବତୀରେ ନାୟିକା ଶୟନ ଶୋଭାବର୍ଣ୍ଣନାରେ ଉପେନ୍ଦ୍ର -

"ଅଣିମାଦି ସୁଖଦାୟି          ଶୋଇଅଛି ଅଣିହୋଇ

ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା

ରସାଣି ରଜତ ବାଡେ          କନକଲତାକି ଜଡେ

ବିଷଦଘନରେ କିସେ ଚପଳ ପ୍ରଭା ।"

ଅଭିମନ୍ୟୁ ରାଧାଙ୍କ ଶୟନ ଶୋଭା ବର୍ଣ୍ଣନାର -

"ବିଶ୍ୱଚିତ୍ତ ବସ ପାଇଁ ପ୍ରତି ମୂର୍ତ୍ତିମନ୍ତ ହୋଇ

ଅଣିମାଦି ଦେବ ଅଣିଆଇଁ ଶୋଇଛି ।

x x x x

ସୁରାଗ ମଣିରେ ପଦ ବକ୍ରନ୍ୟାସ ଦିଆମୁଦ

ରଙ୍ଗ ବାଡେ ହେମ ଲତା ମାଳିଲା ପରା ।"

ରାଧାନାଥ ମଧ୍ୟ ସ୍ଥାନେ ସ୍ଥାନେ ଭଞ୍ଜୀୟ ଶୈଳୀ ଆପଣେଇଛନ୍ତି । ତାଙ୍କର ଚନ୍ଦ୍ରଭାଗା କାବ୍ୟରୁ ଏକ ଉଦାହରଣ -

"ଶ୍ରବଣେ ଦୋଳଇ କୁଣ୍ଡଳ ଦୋଳେ ନୀଳ ଅଳକ

ଲାବଣ୍ୟ ଦର୍ପଣ ପରାଏ ଝଲେ ଖଣ୍ଡ ଫଳକ ।

ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୁର ବିନ୍ଦୁ ରମଇ ଆଖି

ନୁହଇ ସିନ୍ଦୁର ରହିଛ ସ୍ମର ହୃଦୟ ଲାଖି ।"

ଉପେନ୍ଦ୍ରଙ୍କ ମଧୁର ସୁନ୍ଦର ରସାଣିତ ପଦାବଳୀ ପ୍ରଭାବିତ କରୁଥିଲା, ବର୍ତ୍ତମାନ ମଧ୍ୟ ପ୍ରଭାବିତ କରୁଛି ଓ ଭବିଷ୍ୟତର ଲେଖକ ମାନଙ୍କୁ ମଧ୍ୟ ପ୍ରଭାବିତ କରୁଥିବ ।

X-X-X-X

# ଉପସଂହାର

ଉପେନ୍ଦ୍ର ଭଞ୍ଜ ତାଙ୍କ ରଚନାରେ ବିଶେଷ କରି ଦାମ୍ପତ୍ୟ ସୁଖ, ବିରହ ଜନିତ ମନସ୍ତାତ୍ତ୍ୱିକ ମଞ୍ଜୁଳ ଚିତ୍ରାବଳୀ ରାଜ ପୁରର ଗୋପନ କଥା, ପାରଂପାରିକ ରୂପେ ପ୍ରେମମିଳନ ତାର ଆନୁସଙ୍ଗୀକୁ ବର୍ଣ୍ଣନା କରିଥିଲେ ମଧ ସମାଜକୁ ସଂସ୍କାର କରିବାର ପ୍ରୟାସ କରିଥିଲେ । ସେତେବେଳେ ରାଜ ପରିବାର ଓ ସମ୍ଭ୍ରାନ୍ତଧନୀ ପରିବାରରେ ଏକ ଉପଭୋଗ୍ୟ ବସ୍ତୁ ବୋଲି ନାରୀକୁ ବିଚାର କରୁଥିଲେ । ପରିବାରରେ ବହୁ ସ୍ତ୍ରୀ ସମାଗମ ଯୋଗୁଁ ବିଭସ୍ସ କାମୁକତାକୁ ସେ ହୃଦୟଙ୍ଗମ କରିଥିଲେ । ଏଥିପାଇଁ ସେ ଏହା ନିରାକରଣ ସକାଶେ ରାମତାରକ ମନ୍ତ୍ର ସିଦ୍ଧ ହୋଇ ଏକ ପତ୍ନୀ ବ୍ରତ ପରମ୍ପରାର ରସ ପୂର୍ଣ୍ଣ ପଦ ବିନ୍ୟାସରେ ଓଡିଆ ସାହିତ୍ୟରେ ଗଢିଲେ ଭାଷାର ଉତୁଙ୍ଗ କୋଣାର୍କ । ଉଦାରବାଦି ଉପେନ୍ଦ୍ର ରାମ ଭକ୍ତ ହେଲେ ମଧ ଜଗନ୍ନାଥଙ୍କ ପ୍ରତି ତାଙ୍କ ଭକ୍ତି ଗଦ୍‌ଗଦ୍ ହୋଇ ନିଳାଦ୍ରୀ ଓ ନିଳାଦ୍ରୀଶଙ୍କ ଯଶ ମହିମାକୁ ମନୋର ମଞ୍ଜୁଳ ଭାଷା ବିନ୍ୟାସରେ ମଧୁର ଓ କମନୀୟ ଶୈଳୀରେ ଓ ଭାବ ଗମ୍ଭିରତା ସହ ଗାଇଛନ୍ତି ।

ଉପେନ୍ଦ୍ର ମୁଖ୍ୟ ଥିଲା ଓଡିଆରେ ଉଚ୍ଚ କୋଟିର ସାହିତ୍ୟ ସୃଷ୍ଟି । ଏହାକୁ ତତ୍‌କାଳୀନ ବିଦ୍ୱାନ ପଣ୍ଡିତମଣ୍ଡଳୀ ନିକଟରେ କିପରି ସମ୍ମାନ ଦେଇ ପାରିବେ ଓ ଶ୍ରଦ୍ଧାଭାଜନ କରାଇ ପାରିବେ । ଏହି ଭାବକୁ ସେ ନିଜର ବ୍ରତ ଓ ଦୃଢ ସଂକଳ୍ପ ରୂପେ ଗ୍ରହଣ କରିଥିଲେ ଯାହା ଫଳରେ ବୈଦେହିଶ ବିଳାସ, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରି ମହାକାବ୍ୟ ସଂସ୍କୃତ ମହାକାବ୍ୟଠାରୁ ନ୍ୟୁନ ନୁହେଁ ତାହା ପ୍ରମାଣ କରି ଦେଖାଇ ଦେଲେ । ପ୍ରାକୃତ ଭାଷା ଓଡିଆରେ ମଧ ରଘୁବଂଶ ନୈଷଧ ପରି କାବ୍ୟ ରଚିତ ହୋଇ ପାରେ ଏହା ସେ ପଣ୍ଡିତ ସମାଜକୁ ଦେଖାଇ ଦେଲେ ।

ସେ ନୟାଗଡ ରାଜାଙ୍କଠାରୁ ପ୍ରଥମେ ବୀରବର ଉପାଧି ପାଇଥିଲେ ପରେ ଗଜପତି ମହାରାଜା ମଧ ସେହି ଉପାଧି ପ୍ରଦାନ କରିଥିଲେ । ଗଜପତିଙ୍କ ଦରବାରରେ ସଂସ୍କୃତ ଅଭିଜ୍ଞ ପଣ୍ଡିତ ମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା ସେମାନେ

ପାକୃତ ଭାଷାକୁ ହେୟ ମନେ କରୁଥିଲେ ତେଣୁ ବଳରାମ ଦାଶଙ୍କ ଦାଣ୍ଡି ରାମାୟଣ, ସାରଳାଙ୍କ ମହାଭାରତ ବା ଜଗନ୍ନାଥ ଦାଶଙ୍କ ଭାଗବତକୁ କୈଳନ୍ୟତା ଦେଉନଥିଲେ । ସେପରି ବିଦ୍ୱାନ ମଣ୍ଡଳୀର ସମ୍ମୁଖିନ ହୋଇ ନିଜର ଅଗାଧ ପାଣ୍ଡିତ୍ୟ, ବହୁ ଶାସ୍ତ୍ର ଦର୍ଶିତା ଓ ଉଚ୍ଚକୋଟୀର ରଚନା ପାଇଁ ଗଜପତିଙ୍କ ଦରବାରରେ ସମ୍ମାନୀତ ହୋଇଥିଲେ । ଉପାଧି ବଡ କଥା ନୁହେଁ ସେ ଜନ ମାନସରେ ଓଡିଆ ସାହିତ୍ୟର କବି ସମ୍ରାଟ ହୋଇପାରିଛନ୍ତି । ବ୍ରିଟିଶ ଶାସନ ସମୟରେ ଓଡିଆ ଭାଷାର ଦୁର୍ଦ୍ଦିନ ଆସିଥିଲା । ବଙ୍ଗାଳୀ ମାନଙ୍କ ଚକ୍ରାନ୍ତରେ ସେତେବେଳେ ଉତ୍ତର ଓଡିଶା (ଚିଲିକା ପର୍ଯ୍ୟନ୍ତ) ବଙ୍ଗ ସହ ମିଶି ଶାସିତ ହେଉଥିଲା । ଜମିଦାରି ଗୁଡିକ କଲିକତାରେ ନିଲାମ ହେଉଥିବାରୁ ବହୁ ଜମିଦାରୀ ବଙ୍ଗାଳୀ ମାନଙ୍କ କରଗତ ହୋଇଥିଲା । ଫଳରେ ବଙ୍ଗାଳୀ ମାନଙ୍କ ପ୍ରଭାବ ବଢ଼ିଲା ଓ ସରକାରୀ କାର୍ଯ୍ୟାଳୟ ଓ ଶିକ୍ଷାନୁଷ୍ଠାନ ମଧ୍ୟ ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ଫଳରେ ସେମାନେ 'ଓଡିଆ ଏକଟା ଜାତି ନୟେ' ଓ 'ଓଡିଆ ଏକଟା ଭାଷା ନୟେ' ଆନ୍ଦୋଳନ କଲେ । ଏପରିକି ଓଡିଆ ଭାଷା ମାଧ୍ୟମରେ ଶିକ୍ଷାଦାନକୁ ଉଠାଇ ଦେବା ପାଇଁ ସରକାରୀ ଚିଠି ବାହର କରିବା ପାଇଁ ସକ୍ଷମ ହୋଇଥିଲେ । ସେତେବେଳେ ଓଡିଶାର ବିଦ୍ୱାନ ମଣ୍ଡଳୀ ବିଶେଷ କରି ଫକୀର ମୋହନ ସେନାପତି ସତେ ଯେପରି ଓଡିଆ ଭାଷା ସଂଗ୍ରାମରେ ସେନାପତି ସାଜିଥିଲେ । ସେ ଭଞ୍ଜଙ୍କ ଲିଖିତ ବୈଦେହୀଶ ବିଳାସ ଓ ଲାବଣ୍ୟବତୀର ମୁଦ୍ରଣ କରି ତଦାନୀନ୍ତନ ବାଲେଶ୍ୱର ଜିଲ୍ଲା କଲେକ୍ଟର ଜନବିମିସ୍‌ଙ୍କୁ ଦେଖାଇଲେ । ଜନ ବିମସ୍ ଜଣେ ଉଚ୍ଚକୋଟିର ବିଦ୍ୱାନ ଥିଲେ । ସେ ଭାରତର ସେବା କାର୍ଯ୍ୟରେ ରହି ସଂସ୍କୃତ, ହିନ୍ଦି, ବଙ୍ଗଳା, ଓଡିଆ ଓ ଅହମିୟା ଭାଷାରେ ଗଭୀର ଜ୍ଞାନ ଅର୍ଜନ କରିଥିଲେ । ସେ ଉପେନ୍ଦ୍ରଙ୍କ କାବ୍ୟକୁ ପଢି ଏହି ଭାଷା ସଂସ୍କୃତ ସାହିତ୍ୟ ସମକକ୍ଷ ଓ ଏହି ପରି କାବ୍ୟ କୌଣସି ଆଞ୍ଚଳିକ ଭାଷାରେ ନାହିଁ ବୋଲି କେବଳ ମତ ଦେଇନଥିଲେ, ବ୍ରଟିଶ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଓଡିଆକୁ ବିଦ୍ୟାଳୟର ଶିକ୍ଷାଦାନର ମାଧ୍ୟମ ଓ ସରକାରୀ କାର୍ଯ୍ୟାଳୟରେ ପ୍ରଚଳନ କରିବାର ବ୍ୟବସ୍ଥା କରିଥିଲେ । ଏହି ସନ୍ଧିକ୍ଷଣ ମୁହୂର୍ତ୍ତରେ ଭଞ୍ଜଙ୍କ ସୃଷ୍ଟି କିପରି ସାହାଯ୍ୟ କରିଥିଲା

ତାହା ଅନିର୍ବଚନୀୟ । ତେଣୁ ଯଥାର୍ଥରେ ସେ ଓଡିଆ ସାହିତ୍ୟର କବି ସମ୍ରାଟ । ଉପେନ୍ଦ୍ରଙ୍କ ରଚନାବଳୀ ଓଡିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାରେ ବହୁ ସହାୟକ ହୋଇଛି ।

କବିବର ରାଧାନାଥ ରାୟ ସମୟରେ ରାଧାନାଥ ଭଞ୍ଜଙ୍କ ଆଧାର କରି ଦୁଇଟି ପତ୍ରିକା ବାହାରୁଥିଲା । ଗୋଟିଏ 'ବିଜୁଳି' ଓ ଆଉ ଗୋଟିଏ 'ଇନ୍ଦ୍ରଧନୁ' । ପ୍ରତିଦ୍ୱନ୍ଦିତା ଏତେ ତୀବ୍ର ହେଲା ଯେ ଶେଷକୁ ନିଜେ କବିବର ରାଧାନାଥ ରାୟ କହିଲେ ସେ ହେଉଛନ୍ତି ଉପେନ୍ଦ୍ର ଭଞ୍ଜଙ୍କ ବିଶିଷ୍ଟ ଭକ୍ତ । ନନ୍ଦ କିଶୋର ବଳ, ଫକୀର ମୋହନ ସେନାପତି, କବି ଶେଖର ଚିନ୍ତାମଣି ମହାନ୍ତି, ଗୋପବନ୍ଧୁ ଦାଶ, ଶ୍ୟାମସୁନ୍ଦର ରାଜଗୁରୁ ଇତ୍ୟାଦି ସେ ସମୟର ବିଶିଷ୍ଟ ବିଦ୍ୱାନଗଣ ଭଞ୍ଜଙ୍କ ସୃଷ୍ଟି ଗାରିମାକୁ ହୃଦୟଙ୍ଗମ କରି ଭଞ୍ଜ ସାହିତ୍ୟର ସାରବତାକୁ ପରିପ୍ରସାର କରିଥିଲେ । କବିବର ରାଧାନାଥ ରାୟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଶସ୍ତିରେ ବଙ୍ଗଳାରେ ଏକ କବିତା ଲେଖିଥିଲେ । ସେଥିରୁ କିଛି ଅଂଶ -

"ହେ ନୃପକୁଳ ନନ୍ଦନ ନୃପକୁଳ ଧନ
ତୁମି ଓ ଯେମନ ଶୁର ! ସକବି ମଣ୍ଡଲେ
ହୟ ଅଗ୍ରଗଣ୍ୟ କବି ନିଜ ବାହୁବଳେ
ସୁଯଶସ୍ୱୀ ସୁସମୟରେ ସରସ ଲେଖନୀ
ଧରିଲା ଉପେନ୍ଦ୍ର କରି ଯେ ଚାରୁ ଭୂଷଣ
ସଜାଇଛ ବୈଦେହୀଶ ହେ କବି ରତନ
ତୋମା ବିନା ସାଧକାର ସଦାୟ ଏମନ ।"

ଇନ୍ଦ୍ରଧନୁ ପତ୍ରିକାରେ ଉପେନ୍ଦ୍ରଙ୍କ ପ୍ରଶସ୍ତିର କିଛି ଅଂଶ -

"ଭଞ୍ଜ କୁଳ କଞ୍ଜ ଉପଇନ୍ଦ୍ର ବୀରବର
ଧନ୍ୟ ଧନ୍ୟ ନୀଳକଣ୍ଠ ନୃପତି ନନ୍ଦନ
ଆବାଳ ବୃଦ୍ଧ ବନିତା ହୃଦୟ ଚନ୍ଦନ
ଋତୁପତି ସହଚର ମତ୍ତ ପିକବର

ପୂର୍ଣ୍ଣ ଶଶଧର କିବା ମଳୟ ପବନ
ପରି, ସୁଧାଜିତା ତବ ସଙ୍ଗୀତ ଲହରୀ
ତରଙ୍ଗେ ତରଙ୍ଗେ ଦିଗ ବି ଦିଗ ପ୍ରସରି
ପ୍ରାସାଦେ କୁଟିରେ କରେ ଚିତ୍ତ ବିନୋଦନ ।"

କବିଙ୍କର କାବ୍ୟ ବ୍ୟତୀତ କେତକ ସଂଗୀତ ବହୁ ଲୋକ ପ୍ରିୟ ଓ ଆଜି ମଧ୍ୟ କି ମୁର୍ଖ କି ପଣ୍ଡିତ ସମସ୍ତଙ୍କ କଣ୍ଠରେ ନିନାଦିତ । ଯଥା -

"ଦ୍ୱିତୀୟା ଜାମିନୀରେ ମୋ ପ୍ରାଣ ସହି
ଦିନେ ପଲଙ୍କେ ଥିଲା ମୋ କୋଳେଶୋଇ "
"ଆଜି ଦେଖିଲିରେ ନବୀନ ବୟସୀ ବାଳ
ପାଇଥାନ୍ତି ଯଦି ଚନ୍ଦ୍ର ବଦନୀ କି କରିଥାନ୍ତି ଗଳା ମାଳ ।"
"ମଲ୍ଲିମାଳ ଶ୍ୟାମକୁ ଦେବି ମନ ତୋଷିବ"
"ଶ୍ରୀମତି ଶ୍ରୀପତି ବୃନ୍ଦାବନେ କେଳୀ ରଚିଲେ
ବୃନ୍ଦାବନ ଶୋଭା ତରୁ ତରୁ ତଳେ କଳ୍ପତରୁ
ତରୁଣୀ ରତନ ତରୁ ତରଳାକ୍ଷୀ ମାତିଲେ
ସାରଦ ରଦ ପଲଙ୍କେ ସାରଙ୍ଗ ପଙ୍କିଳ ପଙ୍କେ
ସାରଙ୍ଗ ମୁଖି ସାରଙ୍ଗ ସାରଙ୍ଗରେ ମାତିଲେ ।"

ଏହିପରି ଅସଂଖ୍ୟ ଜନପ୍ରିୟ ସଙ୍ଗୀତ ଲୋକମାନେ ଗାନ କରିଥାନ୍ତି । ସେଥିପାଇଁ ଉପେନ୍ଦ୍ର ଭଞ୍ଜଙ୍କ ଗୁଣାବଳୀରେ ବିମୋହିତ ହୋଇ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ଲେଖିଥିଲେ-

"ଗାଏ ତୁମ୍ଭ ଗୀତ      ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା,
ବିଲେ ବୋଲେ ଚଷା  ଅନ୍ତପୁରେ ଯୋଶା
ନୃତ୍ୟ ରଙ୍ଗେ ବାରଙ୍ଗନା ।"

ଚିଲିକାରେ ରାଧାନାଥ ରାୟ ଲେଖିଛନ୍ତି -

"ଭାଗ୍ୟବାନ ବେନି ବାଣୀଙ୍କ କୁମର
କବି ବଳଦେବ ଭଞ୍ଜବୀର ବର ।"

ଓଡିଆ କାବ୍ୟକୁ ଉଚ୍ଚତର ସୋପାନରେ ଆରୁଢ କରାଇବା ସକାଶେ ଉପେନ୍ଦ୍ର ଭଞ୍ଜ ଯେଉଁ କୃତିତ୍ୱ ଦେଖାଇଛନ୍ତି ଓ ତତ୍ ସହ ସ୍ୱକୀୟ ମୌଳିକ ପ୍ରତିଭା ସମ୍ମିଳିତ ଯେଉଁ ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରି ସାହିତ୍ୟର ଉତ୍ତରୋତ୍ତର ଉନ୍ନତି ସାଧନାରେ ମହୋଦ୍ୟମ କରିଛନ୍ତି ବାସ୍ତବରେ ତାହାର ପଟ୍ଟାନ୍ତର ନାହିଁ । ପ୍ରାକୃତିକ ଚିତ୍ରାବଳୀର ବର୍ଣ୍ଣନା, ଚମତ୍କାରିତା ଓ ପରିସ୍ଥିତି ଭେଦରେ ସେହି ବର୍ଣ୍ଣନା ସମୂହର ସୁସଂହତି ରକ୍ଷାକରି ଗଭୀର ଦିବ୍ୟ ଦର୍ଶନର ଓ ବାସ୍ତବିକତାର ପରିଚୟ ମିଳୁଛି ତାଙ୍କର ସେହି ବର୍ଣ୍ଣନା ମାନଙ୍କରେ । ତାଙ୍କର ସୃଷ୍ଟି ଏତେ ମନୋଜ୍ଞ ଏବଂ ଚିତାକର୍ଷକ ଯେ ପାଠକ ଓ ଶ୍ରୋତାର ମନ ସ୍ୱତଃ ରୂପେ ଆକର୍ଷିତ ହୋଇ ସେହି ଭାବରେ ଆତ୍ମବିସ୍ମୃତ ହୋଇଯାଏ ।

କବି ସମ୍ରାଟଙ୍କ ଛନ୍ଦ ଯୋଜନା, ଶବ୍ଦାବଳୀର ଅର୍ଥ ପ୍ରକାଶନୀ ସରସତା, ଗଭୀର ବ୍ୟଞ୍ଜନା, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ଧ୍ୱନ୍ୟାତ୍ମକତା, ପ୍ରସଙ୍ଗାବଳୀର ଧାରା ବାହିକତା ଓ ଅର୍ଥୌଚିତ୍ୟ ଶବ୍ଦର ଯଥାଯଥ ପ୍ରୟୋଗ, ବିଷୟର ସଠିକ ସଜିକରଣ, ଚରିତ୍ର ଚିତ୍ରଣର ବିନ୍ୟସତା ଆଦିରେ ଯେଉଁ ମହନୀୟ ପ୍ରତିଭାର ପ୍ରଦର୍ଶନ କରିଯାଇଛନ୍ତି ଯଥାର୍ଥରେ ତାଙ୍କର ତୁଳନା ସେ ନିଜେ ଓ ଓଡିଆ ସାହିତ୍ୟ ଜଗତରେ ଅମର ସ୍ଥାନ ଅଧିକାର କରି ସଦା ସର୍ବଦା ଜାଜ୍ୱଲ୍ୟମାନ ରୂପେ ଉଦ୍‌ଭାସିତ ହେଉଥିବେ । ବାଲେଶ୍ୱରର କବି କବିଶେଖର ଚିନ୍ତାମଣି ମହାନ୍ତି, ଗଞ୍ଜାମର ଭଞ୍ଜ, ଗୋପାଳକୃଷ୍ଣ, କବିସୂର୍ଯ୍ୟ ଆଦି କବିଙ୍କ କୃତିତ୍ୱରେ ବିମୋହିତ ହୋଇଛନ୍ତି । ସେ ଗଞ୍ଜାମ ପରିକ୍ରମା, ଘୁମୁସର କାବ୍ୟ ରଚନା କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକୃତି ଯୋଗୁଁ ଘୁମୁସର କିପରି ଓଡିଆ ସାହିତ୍ୟ ଆକାଶରେ ମଣୀର ଜ୍ୟୋତି ଧାରଣ କରିଛି ତାହା ବର୍ଣ୍ଣନା କରିଛନ୍ତି ।

"ସାହିତ୍ୟେ ଉତ୍କଳ ନବରତ୍ନ ଖଣି  
ତା ମଧ୍ୟେ ଗଞ୍ଜାମ ମହା ମୂଲ୍ୟ ମଣି  
ସେ ମଣୀର ଜ୍ୟୋତି ଏହି ଘୁମୁସର  
ଉତ୍କଳ ସାହିତ୍ୟ ରତ୍ନ ଗନ୍ତାଘର ॥"



ଲେଖକ ଶ୍ରୀ ଘନଶ୍ୟାମ ମିଶ୍ର ମାଣିତରା ଗ୍ରାମ ନିବାସୀ ଅଟନ୍ତି । ସେ ୧୩-୦୯-୧୯୪୬ ରେ କୁଲାଡ଼ କୃଷ୍ଣଶରଣ ପୁରରେ ଜନ୍ମଗ୍ରହଣ କରିଥିଲେ । ସେ ବିଖ୍ୟାତ ଆୟୁର୍ବେଦ ଚିକିତ୍ସକ, ବହୁଭାଷାବିତ୍ କଣ୍ଠ ଓ ବାଦ୍ୟ ସଙ୍ଗୀତ କଳାକାର ପଣ୍ଡିତ ଶ୍ରୀ ଖଲି ମିଶ୍ର ଓ ଶ୍ରୀମତୀ ରାଧାମିଶ୍ରଙ୍କ ପୁତ୍ର ଅଟନ୍ତି । ଲେଖକଙ୍କୁ ଦୁଇମାସ ହୋଇଥିବା ବେଳେ ତାଙ୍କର ପିତା ସନ୍ନ୍ୟାସୀ ହୋଇ ଗୃହ ତ୍ୟାଗ କରି ଚାଲି ଯାଇଥିଲେ । ବୋଉ, ମା ଓ ଆଈଙ୍କ ଲାଳନ ପାଳନରେ ବହୁ ଦୁଃଖ କଷ୍ଟରେ ଏମ୍.ଏ. ବି.ଇଡ଼ି, ଜ୍ୟୋତିଷ ଶ୍ରୀ, ଜ୍ୟୋତିଷ ସୁଧାକର ଉପାଧିରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ୩ଟି ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରିଛନ୍ତି । ଅବସର ପରେ ପାରାଲିସିସ୍‌ରେ ଆକ୍ରାନ୍ତ ହୋଇ ମଧ (୧) ଧର୍ମ ଭକ୍ତିର ଅମୃତ ଧାରା (୨) ଜଗଦୀଶ ଚଉତିଶା (୩) କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ (୪) Simple and Easy English Grammer ଲେଖିଛନ୍ତି । ନିଜର ଶରୀରକୁ ସମ୍ପୂର୍ଣ୍ଣ ଅଙ୍ଗଦାନ ଚୁକ୍ତିରେ ଆବଦ୍ଧ ହୋଇଛନ୍ତି । ସବୁବେଳେ ସତ୍ୟ ଓ ନ୍ୟାୟ ପଥରେ ଚାଲନ୍ତି । ତାଙ୍କର ସରଳ, ଆଡ଼ମ୍ବରଶୂନ୍ୟ, ଗର୍ବହୀନ ସଦ୍‌ବ୍ୟବହାର ଦ୍ୱାରା ସମସ୍ତେ ମୁଗ୍ଧ ହୁଅନ୍ତି । ମୁଁ ତାଙ୍କର ସୁଖ ଓ ନିରାମୟ ଜୀବନ କାମନା କରୁଛି ।

ପ୍ରକାଶିକା